ଓଡିଶାର ପ୍ରଥମ ସଂପୂର୍ଣ୍ଣ ନିଜସ୍ୱ ମାସିକ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

ମାତୃଭାଷା ଓ ମାତୃଭୂମିର ସଜାଗ ପ୍ରହରୀ

Volume 1, Issue: 6
July 2006



## ଏହି ସଂସ୍କରଣରେ ରହିଛି:



E-Mail: dr.odia@gmail.com
Web site: http://www.freewebs.com/aahwaan

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ
ଆମ୍ବପୁଆ ମେଇନ୍ ରୋଡ, ବ୍ରହ୍ମପୁର, ୭୬୦୦୧୦, ଓଡିଶା

# ଆହ୍ୱାନ

Volume 1, Issue 6,
July, 2006


## ସଂପାଦକୀୟ

ପବିତ୍ର ରଥଯାତ୍ରାର ଏହି ମାସରେ ଆମେ ସମସ୍ତ ଓଡିଆ ବାସୀଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛୁ । ଜଗତର ନାଥ ଶ୍ରୀ ଜଗନ୍ନାଥଙ୍କ ଅପାର କରୁଣାରୁ ଆମର ଏହି ଇ-ପତ୍ରିକା ଚଳିତ ସଂଖ୍ୟାରେ ଛଅ ମାସ ପୁରଣ କରିବାକୁ ଯାଉଛି । ଅର୍ଦ୍ଧବାର୍ଷିକ ପୁର୍ତ୍ତି ହେଉଥିବା ସମୟରେ ଆମେ ଏହି ପତ୍ରିକାରେ କେତୋଟି ନୁତନ ବିଭାଗ ଯୋଡିବାକୁ ଆପଣ ମାନଙ୍କଠାରୁ ମତାମତ ଆହ୍ୱାନ କରୁଛୁ, ଏବଂ ଏହି ପତ୍ରିକାର ଉନ୍ନତି ନିମନ୍ତେ ଆପଣ ମାନଙ୍କ ଦ୍ୱାରା ପ୍ରେରିତ କୃତି ମାନଙ୍କ ଅପେକ୍ଷାରେ ରହୁଛୁ ।

ଦୀର୍ଘ ଏକ ମାସର ପ୍ରତୀକ୍ଷା ପରେ ଶ୍ରୀ ଜଗନ୍ନାଥଙ୍କ ନବଯୌବନ ଦର୍ଶନ କରି ସମବେତ ଭକ୍ତ ଯେତେ ଆନନ୍ଦିତ ହେଲେ ତା'ଠାରୁ ଅଧିକ ଆନନ୍ଦିତ ହେଲେ ଚଳିତ ବର୍ଷର ରଥଯାତ୍ରା ସୁରୁଖୁରୁରେ ପାଳିତ ହୋଇଥିବାରୁ । ସମଗ୍ର ଦେଶରେ ଆତଙ୍କ ବାଦର କଳାଛାଇ ମାଡିରହିଥିବା ବେଳେ ପ୍ରସିଦ୍ଧ ନିଳଗିରିଧାମ ବା କେମିତି ଏଥିରୁ ଦୁରରେ ରହିପାରିବ । କିନ୍ତୁ ସମସ୍ତ ଆଶଂକାକୁ ଦୁରରେ ରଖି ପ୍ରଭୁ ଜଗତନାଥ ଓ ଭାଇ ବଳଭଦ୍ର ତଥା ଭଗ୍ନୀ ସୁଭଦ୍ରାଙ୍କ ସହିତ ମାଉସୀ ମା ଙ୍କ ଆଳୟକୁ ଯାତ୍ରା ବହୁତ ଶାନ୍ତି ପ୍ରଦାନ କରିଥିଲା । ଚଳିତ ରଥଯାତ୍ରାରେ ପୁରୀରେ ପ୍ରାୟ ଦଶରୁ ବାର ଲକ୍ଷ ଲୋକଙ୍କ ସମାଗମ ହୋଇଥିବା ସମର୍ଥିତ ସୂତ୍ରରୁ ପ୍ରକାଶ । ବିଭିନ୍ନ ଗଣମାଧ୍ୟମ ମାନଙ୍କ ଦ୍ୱାରା ରଥଯାତ୍ରାର ସିଧାପ୍ରସାରଣ ହେଉଥିବା ସତ୍ତ୍ୱେ ଏତେ ସଂଖ୍ୟାରେ ଭକ୍ତଙ୍କ ସମାଗମ ସ୍ଥାନୀୟ ବ୍ୟବସାୟୀ ତଥା ପଣ୍ଡା ମାନଙ୍କ ପାଇଁ ଏକ ସୁଖବରେ ହୋଇଥିବା ବେଳେ ସ୍ଥାନୀୟ ପ୍ରଶାସନ ତଥା ଆରକ୍ଷୀ ବାହିନୀ ପାଇଁ ଏହା ଏକ ସମସ୍ୟା ରୂପେ ଦେଖା ଦେଇଥିଲା । ଅନେକେ ସମ୍ଭବତଃ ମନେ ରଖିଥାଇପାରନ୍ତି, ଯେତେବେଳେ ପ୍ରଥମ ଥର ପାଇଁ ପୁରୀ ରଥଯାତ୍ରାର ବେତାର ଧାରା ବିବରଣୀ ପ୍ରଚାର କରାଗଲା, ସେତେବେଳେ ବି ଅନେକ ଗୋଷ୍ଠୀ ଏହାକୁ ବିବାଦ ଭିତରକୁ ଟାଣି ଆଣିବାକୁ ଚେଷ୍ଟା କରିଥିଲେ, କୁହାଯାଉଥିଲା, ବେତାର ବିବରଣୀ ଶୁଣିବା ପରେ ଲୋକମାନେ ଆଉ କେହି ପୁରୀକୁ ଆସିବେ ନାହିଁ । ଅନୁରୁପ ଯୁକ୍ତି ଏହାର ଦୂରଦର୍ଶନରେ ଧାରାବିବରଣୀ ବେଳେ ବି ବଢାଯାଇଥିଲା । କିନ୍ତୁ ସମସ୍ତ କଳ୍ପନା ଜଳ୍ପନାକୁ ପଛରେ ପକାଇ ଭକ୍ତିଡୋରିରେ ବନ୍ଧା ଭକ୍ତମାନେ ଏହି ପବିତ୍ର ଧାମକୁ ଆସି ଜଗତର ନାଥଙ୍କୁ ଦାରୁବ୍ରହ୍ମରୂପରେ କାଷ୍ଠ ରଥଉପରେ ଦର୍ଶନ କରିବାର ଲାଳସାକୁ ଦୁରେଇ ଦେଇ ପାରିଲେ ନାହିଁ। ଦୂରଦର୍ଶନର ଛୋଟପରଦାରେ ଦେଖାଯାଉଥିବା ପ୍ରଭୁ ଆମ ପ୍ରଭୁ କହିବାକୁ ତଥାପି ଅନେକେ ନାରାଜ । ଅଧୁନା ଅନେକ ଗ୍ରାମରେ ଏମିତି ବି ଲୋକମାନେ ଅଛନ୍ତି ଯେଉଁମାନେ ରଥଯାତ୍ରାଦିନ ଦୂରଦର୍ଶନ ଯନ୍ତ୍ରକୁ ଫୁଲମାଳରେ ସଜାଇ ସକାଳୁ ଗାଧୁଆ ପାଧୁଆ ସାରି ଜଗିରହି ଥାଆନ୍ତି ।

ଏହି ମାସରେ ଓଡିଶାର ପାଣିପାଗରେ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା । ଅଧିକାଂଶ ଦିବସରେ ଟାଣ ଖରା ସାଙ୍ଗକୁ ଗୁଳୁଗୁଳି ଯୋଗୁଁ ଜନଜୀବନ ଅସ୍ତବ୍ୟସ୍ତ ହୋଇପଡିଥିଲା । ରଥଯାତ୍ରାର କିଛି ଦିନ ପୂର୍ବରୁ ସ୍ଥାନେ ସ୍ଥାନେ ବର୍ଷା ହୋଇ କିଛିଟା ଆଶ୍ୱସ୍ତିକର ପରିସ୍ଥିତି ଆଣିଥିବା ସତ୍ତ୍ୱେ, ଲୋକମାନେ ହଟହଟା ହୋଇଥିଲେ । ରାଜନୈତିକ ବାତାବରଣ ସରଗରମ ରହିଥିଲା, ନାଲ୍କୋ ପରି ବ୍ୟବସାୟରେ ଲାଭବାନ ହେଉଥିବା ସଂସ୍ଥାରେ ବିନିବେଶକୁ ନେଇ ବିଭିନ୍ନ ରାଜନୈତିକ ଦଳ ତଥା ବିଭିନ୍ନ ଶ୍ରମିକ ସଂଗଠନ ତରଫରୁ ସରକାରଙ୍କ ବିରୋଧ କରି ଓଡିଶା ବନ୍ଦର ଆହ୍ୱାନ କରାଯାଇ ସୁରୁଖୁରୁରେ ସଂପାଦିତ ହୋଇଥିଲା ।

ଜୁଲାଇ ମାସ ପ୍ରାରମ୍ଭରେ ଭାରତର ମହାମହୀମ ରାଷ୍ଟ୍ରପତି ଡ ଏ ପି ଜେ ଅବଦୁଲ୍ କଲାମଙ୍କ ଓଡିଶା ଗସ୍ତପାଇଁ ସମଗ୍ର ରାଜ୍ୟରେ ଉତ୍କଣ୍ଠା ଦେଖାଦେଇଥିଲା । ଏହି ଯାତ୍ରା ପରିପ୍ରେକ୍ଷୀରେ ଅନେକ ସ୍ଥାନରେ ରାସ୍ତା ଚଉଡା କରିବା ସହିତ ଉଠାଦୋକାନ ଗୁଡିକୁ ଉଚ୍ଛେଦ କରାଯାଇ ରାସ୍ତାକୁ ଚଉଡା କରାଯାଇଥିଲା । କିନ୍ତୁ ରାଷ୍ଟ୍ରପତିଙ୍କ ଗସ୍ତ ସମୟରେ ଓଡିଶା ଉପକୁଳରେ ପ୍ରଭାବି ଲଘୁଚାପ ଯୋଗୁଁ କାର୍ଯ୍ୟକ୍ରମ ବାଧାପ୍ରାପ୍ତ ହୋଇଥିଲା, କିନ୍ତୁ ଦ୍ୱିତୀୟ ଦିବସରେ ପାଗ ଅନୁକୂଳ ହେବାପରେ ଗସ୍ତ କାର୍ଯ୍ୟକ୍ରମ ପୂର୍ବବତ୍ ଚାଲୁ ରହିଥିଲା ।

ଆନ୍ଧ୍ରା ସରକାରଙ୍କ ଦ୍ୱାରା ପୋଲବରମ୍ ପ୍ରକଳ୍ପ ଆରମ୍ଭ କରିବା ଯୋଗୁଁ ଦୁଇ ରାଜ୍ୟ ମଧ୍ୟରେ ବୁଝାମଣା ପାଇଁ ରାଜନୈତିକ

ଅବଶିଷ୍ଟାଂଶ ଊନବିଂଶ ପୃଷ୍ଠାରେ....


**ଆମ ଠିକଣାଃ-**

**ଡା ଜ୍ୟୋତି ପ୍ରସାଦ ପଟନାୟକ**

**ଆମ୍ବପୁଆ ମେଇନ୍ ରୋଡ୍**

**ବ୍ରହ୍ମପୁର-୭୬୦୦୧୦, ଓଡିଶା**

**ଫୋନ୍: ୯୨୩୮୬୮୫୬୯୮**

e-Mail:
dr.odia@gmail.com


**ଆହ୍ୱାନ**

# ବଉଳ

(ଶ୍ରୀମତି ଭାଗ୍ୟଲକ୍ଷ୍ମୀ ମହାରଣାଙ୍କ ଦ୍ୱାରା ଲିଖିତ ପୁସ୍ତକ ନୀଳପୁରୁଷରୁ ଉଦ୍ଧୃତ)

ଅନେକ ଦିନପରେ ଶ୍ରାବଣୀ ଗାଁକୁ ଆସିଛି । ଡାକ୍ତରାଣୀ ହୋଇ ଭୁବନେଶ୍ୱର ସରକାରୀ ଡାକ୍ତରଖାନାରେ ଯୋଗଦେଇ ପ୍ରାୟ ବର୍ଷକ ପରେ ସେ ଗାଁକୁ ଫେରିଛି । ଏକା ନୁହେଁ, ସାଙ୍ଗରେ ଆସିଛନ୍ତି ସହକର୍ମୀ ଡାକ୍ତର ଅନିରୁଦ୍ଧ । ଜନ୍ମରୁ ସେ ସହରରେ ବଢିଛନ୍ତି । ପୁଣି ଚାକିରୀ କରିଛନ୍ତି ସହରରେ, ଖୋଦ୍ ରାଜଧାନୀରେ । ଦୀର୍ଘ ଦୁଇ ବର୍ଷକାଳ ଶ୍ରାବଣୀର ଜନ୍ମମାଟି ମଧୁସୂଦନପୁର ଗ୍ରାମ ବିଷୟରେ ଶୁଣି ଶୁଣି ସେ ପୁରାପୁରି ଭଲପାଇ ବସିଛନ୍ତି ଏହି ଅଖ୍ୟାତ, ଅଦେଖା ପଲ୍ଲୀ ଗାଁ'ଟିକୁ । ସକାଳର ସୁନେଲି ସୂର୍ଯ୍ୟ ତା'ର ପ୍ରଥମ କିରଣ କେମିତି ଢାଳିଦିଏ ଗାଆଁ ମୁଣ୍ଡରେ ଥିବା ପଥରା ପାହାଡର ଉଚ୍ଚ ମଥାନ ଉପରେ । ମାର୍ଗଶୀର ମାସରେ ଧାନ କିଆରୀର ପାଚିଲା କେଣ୍ଡା କେଣ୍ଡା ଧାନ ପବନର ଶୀତଳ ସ୍ପର୍ଶରେ କେମିତି ଝୁଲି ଝୁଲି ଦୋଳି ଖେଳୁଥାଏ ।



ଆହ୍ୱାନ୍

ଦଳ ଦଳ ହୋଇ ଝିଅ ବୋହୂମାନେ ଗାଆଁ ଶେଷ ପୋଖରୀ ତୁଠରେ ହଳଦୀ ମାଖି, ଟାହୁଲି ଟାପରା ହୋଇ କେମିତି ପାଣିରେ ପଡ଼ଁରନ୍ତି । ଇଷ୍ଟ ଦେବତା ମଧୁସୂଦନଙ୍କର ସଂଧ୍ୟା ଧୂପ ସମୟରେ ଘଣ୍ଟ ଶବ୍ଦ କେମିତି ନିସ୍ତବ୍ଧତା ମଧ୍ୟରେ ପବିତ୍ର ବାତାବରଣ ସୃଷ୍ଟିକରେ । ଏ ସବୁ ଭାଷାକୁ ଶ୍ରାବଣୀ ମୁହଁରୁ ଶୁଣି ଶୁଣି ମନେ ରଖିଛନ୍ତି ଅନିରୁଦ୍ଧ । ଏ ଗାଆଁରେ ଦୁଇ ଦିନ ରହିଲା ପରେ ଯାଇ ଦେଖିବେ ଶ୍ରାବଣୀର କଥା କେତେ ଦୂର ସତ । ମଧୁସୂଦନପୁର ଗ୍ରାମର ପ୍ରାକୃତିକ ଶୋଭାରାଶି କେତେଟା ହୃଦୟସ୍ପର୍ଶୀ ।

ଶ୍ରାବଣୀ ଆସି ଘରେ ପହଞ୍ଚିବା ମାତ୍ରେ ଆବାଳ-ବୃଦ୍ଧ ବନିତା ସେଠାରେ ଜମା ହୋଇ ଗଲେ, ପ୍ରଥମ ଡାକ୍ତରାଣୀ ହୋଇ ଆସିଥିବା ନିଜ ଗାଁ ମାଟିର ଝିଅଟିକୁ ଦେଖିବା ପାଇଁ । ଶ୍ରାବଣୀ ନିର୍ବିକାର ମନରେ ସବୁ ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ପାଦ ଛୁଇଁଲା । ବୟସରେ ସାନ ଝିଅ ମାନଙ୍କ କପାଳରେ ସ୍ନେହରେ ଚୁମା ଦେଲା । ସଜଳ ଆଖିରେ ଚାହିଁରହିଥିଲେ ଶ୍ରାବଣୀର ବାପା, ବୋଉ । ଅନିରୁଦ୍ଧଙ୍କ ମନ ଏକ ଅଜଣା ମୋହରେ ଆହ୍ଲାଦିତ ହୋଇଗଲା ।

ଶ୍ରାବଣୀ ଛୁଟିନେଇ ଗାଆଁକୁ ଆସିବାର ଅନ୍ୟ ଉଦ୍ଦେଶ୍ୟଥିଲା ସ୍କୁଲ୍ ମାଷ୍ଟର ହରିହର ପ୍ରଧାନଙ୍କ ଝିଅ ଉତ୍ତରାର ବିଭାଘର ଭୋଜିରେ ସେ ଯୋଗଦେବା ।

ଅନିରୁଦ୍ଧ!

ଡାକ୍ତରୀ ତାଲିମ ନେବା ସମୟରେ ଦୀର୍ଘ ଛଅ ବର୍ଷକାଳ ଶ୍ରାବଣୀର ସଂସ୍ପର୍ଶରେ ଆସି ତା'କୁ ଭଲ ପାଇବସିଛନ୍ତି । କ୍ଷୀର ନୀରର ସଂପର୍କ ଗଢିଉଠିଛି ଦୁହିଁଙ୍କର ହୃଦୟରେ ।



ଚାକିରୀପରେ ବିବାହ କରି ଛୋଟ ସୁନ୍ଦର ଘରଟିଏ ବସାଇବାର ସ୍ୱପ୍ନ ବସା ବାନ୍ଧିଛି ଦୁହିଙ୍କ ମନରେ । ଅନିରୁଦ୍ଧଙ୍କୁ ବାପା ବୋଉଙ୍କ ସହ ପରିଚିତ କରାଇଦେଇ ତାଙ୍କଠାରୁ ମତାମତ ନେବାପାଇଁ ଶ୍ରାବଣୀ ଉଦ୍‌ବିଗ୍ନ ହୋଇ ପଡୁଥିଲା ।

ଚୁପି ଚୁପି ତା' କାନ ପାଖରେ ଅନିରୁଦ୍ଧ କହିଲେ, "ଆମେ ତ ଦୁଇ ଦିନ ରହିବା ଶ୍ରାବଣୀ । ବ୍ୟସ୍ତ କାହିଁକି? ତୁମ ବଉଳଙ୍କ ବାହାଘର ଧନ୍ଦା ଛିଣ୍ଡିଯାଉ । ତା'ପରେ ଆମ ବିଷୟରେ ମଉସା ମାଉସୀଙ୍କୁ କହିଲେ ଚଳିବନି?"

ସଲଜ୍ଜ ହସଟିଏ ହସିଦେଇ ଅନିରୁଦ୍ଧଙ୍କ କଥାକୁ ସମର୍ଥନ କଲା ଶ୍ରାବଣୀ ।

ଉତ୍ତରାର ବାହାଘର ଆଜି ।

ବେଦୀକାମଠାରୁ ଆରମ୍ଭ କରି ଉତ୍ତରାକୁ ବୋହୁ ବେଶରେ ସଜାଇବା ଦାୟୀତ୍ୱ ନିଜେ ନେଇଥିଲା ଶ୍ରାବଣୀ । ଏକା ଦିନେ ଜନ୍ମ ହୋଇଥିଲେ ଦୁହେଁ । ଶୈଶବର ଧୁଳିଘର ଆଉ ପୁଚିଖେଳଠାରୁ ଆରମ୍ଭ କରି କିଶୋରୀ ବୟସର ରଜଦୋଳି ଆଉ କୁମାର ପୂର୍ଣ୍ଣିମା ପର୍ଯ୍ୟନ୍ତ ଦିହେଁ ଖୁବ ଯୋଡି ଥିଲେ । ଜଣେ ଦେହ ତ ଆଉ ଜଣେ ତା'ର ଛାୟା । ଜଣକୁ ବାଦ ଦେଇ ଆଉ ଜଣେ ଅସଂପୂର୍ଣ୍ଣ, ଅଶରୀରି । ଏଇ ଦୁଇଜଣଙ୍କ ନିବିଡତା ଦେଖି ଗାଆଁର ଅନ୍ୟ ସାଙ୍ଗ ଝିଅମାନେ ଇର୍ଷାରେ ଜଳିଯାଉଥିଲେ । ଗରିବ ସ୍କୁଲ୍ ମାଷ୍ଟର ହରିହର ପ୍ରଧାନଙ୍କ ଝିଅ ଉତ୍ତରା ଆଉ ଗାଁର ପୁରୁଖା ନେତା-ସରପଂଚ ଦୀନନାଥ ପରିଡାଙ୍କର ଅଲିଅଳି କନ୍ୟା ଶ୍ରାବଣୀ । ଖାଲି ଆଖିରେ ଦେଖିଲେ କେତେ ଦୂରତ୍ୱ । ଧନ, ମାନ, ବଂଶ, ପ୍ରତିଷ୍ଠା, ଆଭିଜାତ୍ୟ ସବୁଥିରେ ଫରକ ।



କିନ୍ତୁ ମନ ଆଉ ଆତ୍ମାଥିଲା ଦୁହିଁଙ୍କର ଏକ, ଅଭିନ୍ନ। ସ୍ୱଚ୍ଛତା, ଓ ପବିତ୍ରତାର ସମ୍ମିଶ୍ରଣ ବିନ୍ଦୁଟିଏ ଅବା।

ସ୍କୁଲ୍ ପଢାପରେ ଦୁହେଁ ଅଲଗା ହୋଇଯାଇଥିଲେ। ଉତ୍ତରାର ପାଠ ପଢା ବନ୍ଦ ହେଲା, ଆର୍ଥିକ ଅସୁବିଧା ଯୋଗୁଁ। ଶ୍ରାବଣୀ ସହରରେ ହଷ୍ଟେଲ୍‌ରେ ରହି କଲେଜ୍‌ରେ ପାଠ ପଢି, ଡାକ୍ତରାଣୀ ହୋଇ ଗାଆଁକୁ ଫେରିଛି। ଶ୍ରାବଣୀକୁ ଦେଖୁ ଦେଖୁ କୁଣ୍ଢାଇ ପକାଇ ଆନନ୍ଦରେ କାନ୍ଦି ପକାଇଲା ଉତ୍ତରା। ଶ୍ରାବଣୀ ତା'ଗାଲରେ ଟିପ ମାରିଦେଇ କହିଲା, "ବଉଳ, ଆମ ଗାଁର ପ୍ରଥମ ଡାକ୍ତରାଣୀ ଖୁସିରେ ମୁଁ ହସିଛି ସିନା, କାନ୍ଦିପାରିନାହିଁ। ତୁ ତ କମାଲ କରିଦେଲୁ। ମୋ ଆଖିରେ ଛପି ରହିଥିବା ଆନନ୍ଦର ଲୁହ ଦୁଇ ଧାରକୁ ତୋ ଆଖି କେମିତି- କେତେବେଳେ ଚୋରାଇ ନେଇଗଲା।"

ସେମିତି ଭିଜା ଆଖିନେଇ ଉତ୍ତରା କହିଲା, "ମୋ ଓଠର ହସ ତୋ ଓଠରେ ମିଶି ଯାଇଛି ଯେତେବେଳେ, ତୋ ଆଖି ଲୁହ କଣ ମୋ ଆଖିର ନୁହେଁକି ବଉଳ! ଦୁଃଖର ହେଉ କିମ୍ବା ଆନନ୍ଦର ହେଉ, ଏ ଲୁହ ତ ଆମ ଦୁଇ ଜଣଙ୍କର ।"

ଉତ୍ତରାର ଚନ୍ଦନ ସଜ୍ଜିତ କପାଳରେ ମମତାର ଗାଢ ଚୁମ୍ବନ ଟିଏ ଆଙ୍କିଦେଲା ଶ୍ରାବଣୀ। ଶଙ୍ଖ, ହୁଳହୁଳି ଆଉ ମଙ୍ଗଳ ଶାହନାଇର ସୁମଧୁର ସ୍ୱର ମଧ୍ୟରେ ବରଯାତ୍ରୀ ଆସି ପହଞ୍ଚିଗଲେ। ବେଶ ଧୁମ୍‌ଧାମ୍ ରେ, ହସ ଖୁସିରେ ବିଭାଘର ଅଧାଅଧି ସରିଗଲା। ଶେଷ ପର୍ଯ୍ୟାୟ୍ ଥିଲା, ବରକନ୍ୟାଙ୍କର ହସ୍ତଗ୍ରନ୍ଥି।

ହଠାତ୍ ବିଭ୍ରାଟ ସୃଷ୍ଟି ହୋଇଗଲା।

ବରପାତ୍ର ଶ୍ରୀକାନ୍ତର ବାପା ଦାବୀ କରିବସିଲେ ନଗଦ କୋଡିଏ ହଜାର ଟଙ୍କା। ଭୋଜି ଖର୍ଚ୍ଚ ଆଉ ବାଟ ଖର୍ଚ୍ଚ ବାବଦକୁ ଏ ଟଙ୍କା କନ୍ୟା ପକ୍ଷକୁ ଦେବାକୁ ହେବ । ନଚେତ୍ ହସ୍ତଗ୍ରନ୍ଥି ପଡିବ ନାହିଁ।

ଶ୍ରୀକାନ୍ତ ଅଚାନକ ତା' ବାପାଙ୍କର ଏହି ଦାବୀକୁ ପ୍ରତିବାଦ କରିବାର ସାହାସ ପାଇଲା ନାହିଁ । ହରିହର ମାଷ୍ଟ୍ରେ ସ୍ଥାଣୁ ପାଲଟିଗଲେ। ପାଗଳିଙ୍କ ଭଳି କାନ୍ଦି ଉଠିଲେ ଉତ୍ତରାର ବୋଉ। ଗାଆଁଲୋକେ ସ୍ତବ୍ଧ ହୋଇ ରହିଗଲେ ସିନା, କିଛି ଯୁକ୍ତି କରିପାରିଲେ ନାହିଁ। ସଚ୍ଚୋଟ ଧର୍ମପରାୟଣ, ଗରିବ ସ୍କୁଲ୍ ମାଷ୍ଟର, ହରିହର ବାବୁ ନେହୁରା ହୋଇ ଶ୍ରୀକାନ୍ତର ବାପାଙ୍କ ପାଦ ଧରିବାକୁ ଗଲା ବେଳେ ବେଦୀ ଉପରୁ ଉଠି ଘର ଭିତରକୁ ଦଉଡି ପଳାଇଗଲା ଉତ୍ତରା । ଘର ଚାରିପାଖ କବାଟ ବନ୍ଦ କରିଦେଲା । ସମସ୍ତଙ୍କ ମନରେ ଆଶଂକା ଖେଳିଗଲା।

ମାନସିକ ଚାପର ବଶୀଭୁତ ହୋଇ କିଛି ଅଘଟଣ କରିଦେବନାହିଁ ତ! ବାହା ବେଦୀର ନାଲି ଓଢ଼ଣୀକୁ ବେକରେ ବାନ୍ଧି ଘରର ଦୁଲାଉପରୁ ଓହଳି ପଡିବା ବେଳକୁ କବାଟ ଭଙ୍ଗାଯାଇ ତା'କୁ ଉଦ୍ଧାର କରାଗଲା। ଭାଗ୍ୟ ଭଲ, ବଞ୍ଚିଗଲା ଉତ୍ତରା।

ବରଯାତ୍ରୀ ସହିତ ବର ଫେରିଗଲା।

ଚରମ ଦୁଃଖ ଆଉ ଅପମାନରେ ସଢ଼ିଗଲା ଶ୍ରାବଣୀ। ମଙ୍ଗୁଳା କନ୍ୟା ଉତ୍ତରାର ମୁହଁ ଚାହିଁବା ପାପ ହେବ ବୋଲି ଗାଆଁର ବୃଦ୍ଧ ବୃଦ୍ଧାମାନଙ୍କ ଟିପ୍ପଣିକୁ ଆଉ କାନପାତି ସହ୍ୟ କରିପାରିଲା ନାହିଁ ସେ। ଏ ପରିସ୍ଥିତିରେ କଣ କରାଯିବ, କିଛି ଭାବିପାରିଲା ନାହିଁ। କିନ୍ତୁ ପର ମୁହୂର୍ତ୍ତରେ ତା' ମୁହଁର ରଙ୍ଗ ବଦଳିଗଲା। ପାଖରେ

ବିଷାଦଅଗ୍ରସ୍ତ ଚେହେରା ନେଇ ଠିଆ ହୋଇଥିବା ଅନିରୁଦ୍ଧଙ୍କୁ ସେ ଟାଣିନେଲା, ଘର ପଛପଟ ନିରୋଳା ସ୍ଥାନକୁ। ଏକା ନିଃଶ୍ୱାସରେ କହିଗଲା, "ଅନିରୁଦ୍ଧ! ଅନିରୁଦ୍ଧ ଏମିତି ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇଗଲା। ବଉଳ ପୁରାପୁରି ଭାଙ୍ଗି ପଡିଛି, ଦେଖୁଛ ତ ମୃତ୍ୟୁ ମୁଖରୁ ତା'କୁ କେମିତି ଟାଣି ଆଣିବାକୁ ପଡିଲା! ମଉସାଙ୍କ ଅବସ୍ଥା ଦେଖିଲେ ଭାରି ବିକଳ ଲାଗୁଛି। କଣ କରିବା ଏବେ?"

ଦୁଃଖିତ କଣ୍ଠରେ ଅନିରୁଦ୍ଧ କହିଲେ, "ଆମେ ଆଉ କଣ କରିପାରିବା ଶ୍ରାବଣୀ? ବରଯାତ୍ରୀତ ଚାଲିଗଲେଣି। ଶ୍ରୀକାନ୍ତ ରାଜି ହୋଇଥିଲେ ସିନା ଆମେ କିଛି କରିପାରନ୍ତେ?"

"ତମେ ଚାହିଁଲେ କିଛି କରିପାରିବ,



ଅନିରୂଦ୍ଧ।"

ଅନିରୂଦ୍ଧ ବିସ୍ମୟରେ ଚାହିଁଲେ ଶ୍ରାବଣୀକୁ। ତା'ଙ୍କ ହାତଧରି ଅନୁନୟ କଣ୍ଠରେ ଶ୍ରାବଣୀ କହିଲା, " ତୁମେ ମୋ ବଉଳଙ୍କୁ ବଞ୍ଚାଅ ଅନିରୂଦ୍ଧ। ମଉସାଙ୍କୁ ଏ ବିପଦରୁ ରକ୍ଷା କରି, ଏଇ ଗାଆଁର ସମ୍ମାନ ରଖ। ଆଜି ଏ ବେଦୀରେ ମୋ ବଉଳଙ୍କୁ ତୁମେ ବିବାହ କର।"

"ଶ୍ରାବଣୀ! କଣ କହୁଚ ତୁମେ! ପାଗଳି ହୋଇଗଲଣି ନା କଣ ତୁମେ?" ଅନିରୂଦ୍ଧ ଚିତ୍କାର କରିଲା ପରି କହି ଉଠିଲେ।

"ମୁଁ ପାଗଳି ହୋଇନି ଅନିରୂଦ୍ଧ। ସଂପୂର୍ଣ୍ଣ ସୁସ୍ଥ ମସ୍ତିଷ୍କରେ ଅନୁରୋଧ କରୁଚି। ମୁଁ ଜାଣେ, ତୁମେ ମୋତେ କେତେ ଭଲ ପାଅ! ଏ କଥା ସତ ଯେ ଆମେ ଦୁହେଁ ପରସ୍ପରକୁ ବିବାହ କରି ସୁଖି ସଂସାର ଗଢ଼ିବାର ସ୍ୱପ୍ନ ଦେଖି ଆସିଛେ। କିନ୍ତୁ ଏମିତି ଅସମୟରେ ଆମକୁ କିଛି କରିବାକୁ ପଡିବ। ଜଣେ ନିରିହା, ସରଳା ଝିଅର ମୁହଁରେ ହସ ଭରିଦେବା ପାଇଁ, 'ଜଣେ ବୃଦ୍ଧ, ଅସହାୟ, ଗରୀବ ବାପାକୁ ଏ ଯୌତୁକ ରାକ୍ଷସର କ୍ରୋଧରୁ ରକ୍ଷା କରିବା ପାଇଁ ଆମକୁ ଏତିକି ତ୍ୟାଗ କରିବାକୁ ହେବ। ଏଇତ ମଣିଷ ପଣିଆ, ଅନିରୂଦ୍ଧ! ଏହାକୁ ହିଁ କୁହାଯାଇ ପାରିବ- "ମାନବିକତା"। ମଣିଷ ହୋଇ ମଣିଷ ପାଇଁ ଯଦି କିଛି ତ୍ୟାଗ କରିଦେଇପାରିବା, ତାହା ହେବ ଆମପାଇଁ ପ୍ରକୃତ ଧର୍ମ।"

ସ୍ଥାଣୁ ଭଳି ଠିଆ ହୋଇଯାଇଥିବା ଅନିରୂଦ୍ଧକୁ ସଜୋରେ ହଲାଇ ଦେଇ ଶ୍ରାବଣୀ କହିଲା, " ମୁଁ ତୁମକୁ ସବୁବେଳେ ଉଚ୍ଚ ଦୃଷ୍ଟିରେ ଦେଖି ଆସିଛି ଅନିରୂଦ୍ଧ! ଆଜି ଆହୁରି ଉଚ୍ଚ ସ୍ତରରେ ଦେଖିବାକୁ ଚାହେଁ ମୋ ଗାଆଁ ଲୋକଙ୍କ ଆଖିରେ। ତୁମ ଭିତରେ ଥିବା ଦେବତ୍ୱର ପରିପ୍ରକାଶ କରିବାକୁ ଚାହେଁ"

-"କିନ୍ତୁ ଶ୍ରାବଣୀ"

ଅନିରୂଦ୍ଧଙ୍କ କଥାକୁ ସଂପୂର୍ଣ୍ଣ କରିବାକୁ ନ ଦେଇ ଶ୍ରାବଣୀ କହିଲା,

-"ତୁମେ ମନା କରିଦିଅନା ଅନିରୂଦ୍ଧ। ତୁମ ବାପା, ମାଆଙ୍କୁ ବୁଝାଇବାର ଦାୟୀତ୍ୱ ମୁଁ ନେବି। ମୋର ବିଶ୍ୱାସ, ବଉଳକୁ ବୋହୁ ବେଶରେ ଦେଖିଲେ, ସେମାନେ ନିଶ୍ଚୟ ଖୁସି ହେବେ। ମୋ ବଉଳ ଅଶିକ୍ଷିତା ନୁହେଁ, ଅସୁନ୍ଦରୀ ନୁହେଁ। ସର୍ବଗୁଣ ସଂପନ୍ନା ସେ। ତୁମର ପତ୍ନି ହେବାପାଇଁ ସବୁ ଦିଗରୁ ସେ ଉପଯୁକ୍ତା। ମୋତେ ତୁମେ ବିବାହ କରିଥିଲେ ମୁଁ ଯେତିକି ସୁଖି ହୋଇଥାଆନ୍ତି, ତା'ଠାରୁ ଆହୁରି ଅଧିକ ଖୁସି ହେବି ଯଦି ତୁମେ ମୋ ବଉଳକୁ ଗ୍ରହଣ କର। କହିଥିଲି ନା ଅନିରୂଦ୍ଧ। ସେ ଆଉ ମୁଁ ଏକ ମନ, ଏକ ଆତ୍ମା, କେହି କାହାପାଇଁ ଭିନ୍ନ ନୋହୁଁ। ଆଖିର ଲୁହ ଆଉ ଓଠର ହସ ଆମ ଦୁହିଁଙ୍କର ଅଧା ଅଧା ହୋଇ ସାରିଛି, ତା'କୁ ପୁଣି ଜଣକର ହେବାକୁ ଦିଅନା। ଏଇ ଗାଆଁର କେହି ଜଣେ ବି ଆମ ସମ୍ବନ୍ଧରେ କିଛି ଜାଣି ନାହାନ୍ତି। ମୋ ବାପା-ବୋଉଙ୍କୁ ବି ତୁମ ବିଷୟରେ କିଛି କହିନି। କେହି ଜାଣିବା ପୂର୍ବରୁ ତୁମେ ମୋ ବଉଳର ସୀମାନ୍ତରେ ସିନ୍ଦୂର ଭରିଦିଅ। ତୁମେ ଯଦି

ତା' ମୁହଁରେ ଟିକେ ହସ ଭରିଦେବ, ତା'ହେଲେ ମୁଁ ଜାଣିନେବି, ପରବର୍ତ୍ତୀ ଜନ୍ମରେ ତୁମେ ମୋର ଏକାନ୍ତ ନିଜର ହୋଇପାରିବ।

ବର୍ତ୍ତମାନଠାରୁ ମୁଁ ତୁମର ଅନ୍ତରଙ୍ଗ ବାନ୍ଧବୀ ହୋଇଗଲି। ବନ୍ଧୁ ହୋଇ, ସମାଜର ସେବାକରି ଆମେ ସାରା ଜୀବନ ବିତାଇଦେବା। ଆମ ପବିତ୍ର ମନ ସବୁବେଳେ ପବିତ୍ର ହିଁ ହୋଇ ରହିବ। କୁହ ଅନିରୂଦ୍ଧ! ମୋ କଥା ରଖିବ ତ?"

ଡାକ୍ତର ଅନିରୂଦ୍ଧଙ୍କ ଆଖି କୋଣରେ ଲୁହର ଲହଡି ଭାଙ୍ଗୁଥିଲା। ଆଜିଯାଏ ନିବିଡ ଭାବେ ଭଲପାଇ ଆସୁଥିବା ଶ୍ରାବଣୀର ପ୍ରେମକୁ ସେଇ ଲୁହଧାରରେ ଧୋଇ ନେଇ ନିଜ ମୁହଁରେ ସ୍ନେହ, ମମତା ତଥା ବନ୍ଧୁତାର ହସ ଧାରଟିଏ ଖେଳାଇ ଶ୍ରାବଣୀର କପାଳରେ ଚୁମ୍ବନ କଲେ ସେ।

ପରମ ଆନନ୍ଦରେ ଅନିରୂଦ୍ଧଙ୍କ ହାତ ଟାଣି ଧରି ଆଖି ପିଛୁଳାକେ ବେଦୀ ପାଖରେ ପହଞ୍ଚିଗଲା ଶ୍ରାବଣୀ।

ରବିବାର- ସମ୍ବାଦ / ମଇ-୧୯୯୬



# ଆଉ ଜଣେ ବୁଢ଼ିଆ

ଏହି ଚିତ୍ରରେ ଦେଖାଯାଉଥିବା ବାଳକ ଜଣକ ନିଶ୍ଚୟ ଅନେକ ଦୂରତ୍ୱ ଅତି



ସହଜରେ ଦଉଡି ଯାଇପାରୁଛି, କିନ୍ତୁ ସେ ଓଡିଆର ଗର୍ବ ଓ ଗୌରବ ବୁଢ଼ିଆ ନୁହେଁ, ବରଂ ବୁଢ଼ିଆର ପାଦାଙ୍କ ଅନୁସରଣ କରୁଥିବା ବିସ୍ମୟ ବାଳକ ଦିଲ୍ଲିପ। ପୁରୀ ଜିଲ୍ଲା ପିପିଲିଠାରେ ସଂପ୍ରତି ସମାପ୍ତ ହୋଇଥିବା ଏକ ଦଉଡ ପ୍ରଦର୍ଶନରେ



ଏହି ବିସ୍ମୟ ବାଳକ ବୁଢ଼ିଆ ପରି କୀର୍ତ୍ତିମାନ ସ୍ଥାପିତ କରିବାର ଆଶା ରଖେ ବୋଲି କହିଥିଲା।

ଚିତ୍ର: ଶ୍ରୀ ସଂଜୟ ସାହୁ,

ଉଲ୍ଲେଖ: ଡ ଜ୍ୟୋତି ପ୍ରସାଦ

# ରଥଯାତ୍ରା

ଏଥର ସଂଖ୍ୟାରେ ରହିଛି: ଉତ୍କଳୀୟ ପରଂପରାର ଅଦ୍ୱିତୀୟ ଉଦାହରଣ, ଭକ୍ତ ଓ ଭଗବାନଙ୍କ ମିଳନର ଅଦୃଶ୍ୟ ସଂବନ୍ଧର ସେତୁ, ଦାରୁମୂର୍ତ୍ତୀଙ୍କ ମାଉସୀମା ଘରକୁ ଯାତ୍ରା: ଓଡିଶାର ପ୍ରସିଦ୍ଧ ଘୋଷଯାତ୍ରା ବା ରଥଯାତ୍ରା

## ବଳଭଦ୍ରଙ୍କ ରଥର ବିଷୟରେ ସମ୍ୟକ ସୂଚନା:

ରଥକାଠ ଅନୁକୂଳ ପୂଜାର ତିଥି:
ଶ୍ରୀ ପଞ୍ଚମୀ

ରଥକାଠ ଚିରା ତିଥି:
ଶ୍ରୀରାମ ନବମୀ

ରଥ ନିର୍ମାଣର ଅନୁକୂଳ ତିଥି:
ଅକ୍ଷୟ ତୃତୀୟା

ପ୍ରଥମ ଦଫା ରଥଚକା ଡେରା ତିଥି:
ଭଉଁରୀ (ଚନ୍ଦନ ଯାତ୍ରା)

ଚାରି ନାହାକ ଡେରା ତିଥି:
ଦେବସ୍ନାନ ପୂର୍ଣ୍ଣିମା

ରଥ ନିର୍ମାଣ ହେଉଥିବା ସ୍ଥାନର ନାମ:
ବଡଦାଣ୍ଡ ରଥଖଳା

ରଥଖଳାରୁ ସିଂହଦ୍ୱାରକୁ ରଥଟଣା ତିଥି:
ନେତ୍ରୋତ୍ସବ

ତିନି ରଥ ନିର୍ମାଣରେ ଲାଗୁଥିବା କାଠଗଣ୍ଡ
ସଂଖ୍ୟା: ୧୭୨

ରଥଯାତ୍ରାର ତିଥି:
ଆଷାଢ ଶୁକ୍ଳପକ୍ଷ ଦ୍ୱିତୀୟା







ପ୍ରଥମେ କେଉଁରଥ ଟଣାଯାଏ:
ତାଳଧ୍ୱଜ

ପ୍ରତ୍ୟେକ ରଥରେ ଲାଗୁଥିବା ଦଉଡି ସଂଖ୍ୟା:
୪

ରଥଯାତ୍ରାରେ ସୁଦର୍ଶନ କେଉଁ ରଥରେ ବିଜେ ହୁଅନ୍ତି: ଦେବଦଳନ/ ଦର୍ପଦଳନ

ରଥଯାତ୍ରାରେ ରାମକୃଷ୍ଣ କେଉଁ ରଥରେ ବିଜେ ହୁଅନ୍ତି: ତାଳଧ୍ୱଜ

ଶ୍ରୀ ବଳଭଦ୍ରଙ୍କ ରଥର ନାମ:
ତାଳଧ୍ୱଜ/ ଲଙ୍ଗଳଧ୍ୱଜ/ ହଳଧ୍ୱଜ

ତାଳଧ୍ୱଜ ରଥର ଘୋଡାର ରଙ୍ଗ ଓ ସଂଖ୍ୟା:
କଳା ଓ ଚାରୋଟି

ରଥ ଆବରଣ କନାର ରଙ୍ଗ:
ନାଲି ନୀଳ

ରଥ ଉଚ୍ଚତା:
୪୫ ଫୁଟ

ରଥ ଚକ ସଂଖ୍ୟା ଓ ଉଚ୍ଚତା:
୧୪ଟି, ଓ ୬ଫୁଟ ୬ ଇଞ୍ଚ

ରଥ ଆୟୁଧ:
ହଳ, ମୂଷଳ

ରଥ ଦଉଡିର ନାମ:
ବାସୁକୀ

ରଥ ଦ୍ୱାରପାଳ:
ନନ୍ଦ, ସୁନନ୍ଦ

ରଥ ଶୁଆ ଯୁଗଳର ନାମ:
ଶ୍ରଦ୍ଧା, ବିଶ୍ୱାସ

ରଥଦେବୀ:
ଜୟଦୁର୍ଗା

ରଥ ଶୁନ୍ୟଚକ୍ରର ନାମ:
କାଳସଂହାର

ରଥ ସାରଥୀଙ୍କ ନାମ:
ମାଳତୀ

ରଥ ଘୋଡାର ନାମ:
ଶଙ୍ଖ, ସୁଚିତ୍ର, ଅଙ୍ଗଦ, ମେଘନାଦ /(ହ୍ରିରା,

ଧୃତି, ସ୍ଥିତି, ପ୍ରଜ୍ଞା)

**ରଥ ରତ୍ନ:**

ମର୍କତ

**ଦଧିନଉତିର ନାମ:**

ଭୁବନକୋଷ

# ଶହେବର୍ଷ<br>ତଳ<br>ରଥଯାତ୍ରା:

୨୦ ତାରିଖ ବୁଧବାର ରାତ୍ର ଶେଷେ ନବଯୌବନ ଦର୍ଶନ ଆରମ୍ଭ ହୋଇଥିଲା। ୨୧ ତାରିଖ ଗୁରୁବାର ପୂର୍ବାହ୍ନରେ ଯାତ୍ରୀମାନେ ନବଯୌବନ ଦର୍ଶନ ଲାଭ କରିଥିଲେ। ଏ ଦିନ ଯାତ୍ରୀସଂଖ୍ୟା ୧୦/ ୧୫ ହଜାରରୁ ଅଧିକ ନଥିଲା ମାତ୍ର ଏହି ଦିନଠାରୁ ଶ୍ରୀ ଗୁଣ୍ଡିଚା ପର୍ଯ୍ୟନ୍ତ ପ୍ରତ୍ୟହ ୩/ ୪ବାର ସ୍ପେଶାଲ୍ ଟ୍ରେନ୍ ଆସିଥିଲା।

ଏ ଦିନ ଶ୍ରୀ ଜୀଉଙ୍କର ତିନିଦିନ ଉଭାଯାତ୍ରା ପଡିଥିଲା। ୨୩ ତାରିଖ ଶନିବାର ନେତ୍ରୋତ୍ସବାଦି ବିଧିପରେ ରଥମାନଙ୍କୁ ଆଜ୍ଞାମାଳ ଆସିଥିଲା।ଏ ବର୍ଷ ପୁରୀର ଚିତ୍ରକାର ଦ୍ୱାରା ରଥ ଅତି ସୁନ୍ଦର ଭାବରେ ଚିତ୍ରିତ ହୋଇ ବିଶେଷ ପ୍ରଶଂସା ଭାଜନ ହୋଇଥିଲା। ଅପରାହ୍ନ ପ୍ରାୟ ତିନିଟାରେ ରଥଟଣା ଆରମ୍ଭ ହେଲା। ଏବଂ ଚାରିଟାରେ ତିନି ରଥ ସିଂହଦ୍ୱାରରେ ଉପସ୍ଥିତ ହେଲେ। କଲିକତା ଦଉଡି ରଥଟଣାରେ ବ୍ୟବହୃତ ହୋଇଥିଲା। ୨୪ ତାରିଖ ରବିବାର ଦିନ ଉଦୟଙ୍କୁ ଦ୍ୱିତୀୟା ଦ୨/୩ଣ୍ଡ ଥିବାରୁ ଏହିଦିନ ଶ୍ରୀଗୁଣ୍ଡିଚା ହେବାର ପୂର୍ବରୁ ସ୍ଥିର ହୋଇଥିଲା। ପୂର୍ବାହ୍ନ ପ୍ରାୟ ୮ ଘଣ୍ଟା ଠାରେ ଶ୍ରୀଜୀଉଙ୍କର ପହଣ୍ଡି ବିଜୟ ଆରମ୍ଭ ହେଲା, ଏବଂ ୧୦ ଘଣ୍ଟା ବେଳେ ଠାକୁରମାନେ ରଥାରୂଢ ହେଲେ। ପରମ ମାନନୀୟ ପୁରୀର ରାଜା ବାହାଦୂର ରଥମାନଙ୍କର ଛେରା ପହରା କଲେ। ଚାରମାଳ ଖୋଲାହେବାର କିୟତ୍କାଳ ପରେ ମଧ୍ୟାହ୍ନ ୧ ଘଣ୍ଟା ସମୟରେ ରଥଟଣା ଆରମ୍ଭ ହୋଇଥିଲା। ତାଳଧ୍ୱଜରେ ପୁଲିସ୍ ସାହେବ, ଦେବୀ ରଥରେ ଡିଷ୍ଟ୍ରିକ୍ଟ ଇଞ୍ଜିନିୟର ଏବଂ ଶ୍ରୀ ଜଗନ୍ନାଥଙ୍କ ରଥରେ ସ୍ୱୟଂ ପୁରୀ ରାଜା, ଓ ମାଜିଷ୍ଟ୍ରେଟ୍ ମି: ପି ସି ମିତ୍ର ସାହେବ ଉପସ୍ଥିତ ଥିଲେ। ଏ ବର୍ଷ ଯାତ୍ରୀ ଊଣା ହେବା ଆଶାରେ ନବଯୌବନ ପୂର୍ବରୁ ପାସ୍ ଘରବାଲା ମାନେ ଯାତ୍ରା ଶେଷ ପର୍ଯ୍ୟନ୍ତ ପ୍ରତ୍ୟେକ ଯାତ୍ରୀଙ୍କୁ ଏକ ଟଙ୍କା ଓ ତତ୍ନ୍ୟୂନ ଭଡାରେ ରଖି ଦେଇଥିଲେ, କିନ୍ତୁ ସ୍ପେଶାଲ୍ ଟ୍ରେନ୍ ଯୋଗେ ଆଶାତୀତ ସଂଖ୍ୟାରେ ଯାତ୍ରୀ ହୋଇଥିଲେ। ଶ୍ରୀଗୁଣ୍ଡିଚା ଦିନ ରଥଟଣା ଓ ପହଣ୍ଡି ସମୟେ ଆନୁମାନିକ ୬୦/ ୭୦ ହଜାର ଯାତ୍ରୀ ହୋଇଥିଲେ।

ଉତ୍କଳ ଦୀପିକା (ଭାଗ ୪୨, ସଂଖ୍ୟା ୨୬, ତା୩୦ରିଖ, ଜୁନ୍ ୧୯୦୭ ମସିହାର ସଂପାଦିତ ଅଂଶ)




# ଛତିଶା<br>ନିଯୋଗ

(ପୂର୍ଣ୍ଣଚନ୍ଦ୍ର ଭାଷାକୋଷରୁ ଆନୀତ)

୯୭ଜଣ ସେବକଙ୍କ ମଧ୍ୟରୁ ବୋଧହୁଏ ବିଶିଷ୍ଟ ୩୬ଜଣ ସେବକଙ୍କ ଯୋଗୁଁ "ଛତିଶା ନିଯୋଗ" ନାମକରଣ କରାଯାଇଛି। ଶ୍ରୀ କ୍ଷେତ୍ର ପୁରୀଧାମ ଭାରତ ତଥା ପୃଥିବୀର ଶ୍ରେଷ୍ଠଧାମ। ଶ୍ରୀମନ୍ଦିର ଏକ ସ୍ୱତନ୍ତ୍ର ସାମ୍ରାଜ୍ୟ ଏବଂ ତାହାର ସମ୍ରାଟ ସ୍ୱୟଂ ଜଗନ୍ନାଥ। ସେ ସାମ୍ରାଜ୍ୟର ପ୍ରଚଳିତ ଶବ୍ଦ ମଧ୍ୟ ସ୍ୱତନ୍ତ୍ର। ଯାହା ଓଡିଆ ଭାଷା ହେଲେ ମଧ୍ୟ ସେ ଶବ୍ଦ ଅନ୍ୟ କୌଣସିଠାରେ ଦୃଷ୍ଟିଗୋଚର ହୁଏ ନାହିଁ।

୧ **ସ୍ୱୟଂ ପୁରୀ ମହାରାଜା:** ରଥ ଛେରା ପହଁରା

୨ **ମୁଦିରଥ:** (ରାଜାଙ୍କ ପ୍ରତିନିଧି) ରାଜାଙ୍କ ଅନୁପସ୍ଥିତିରେ ସେବା କାର୍ଯ୍ୟ ଚଳାଇବା

୩ **ପୂଜାପଣ୍ଡା:** ନୈବେଦ୍ୟ ଦେବା

୪ **ଭିତର ଛଉଁ:** ଦେଉଳ ଦୁଆର ଫିଟାଇବା ଓ ଭୋଗ ସମୟରେ ଜଗିବା ଓ ଠାକୁରଙ୍କୁ ବେଶ କରାଇବା।

୫ **ତିଳିଛଁ:** ପରିଛାଙ୍କ ପ୍ରତିନିଧି

୬ **ପଶୁପାଳକ:** ବେଶ କରିବା

୭ **ଦଇତା:** ସିଂହାସନରୁ ଠାକୁରଙ୍କୁ ନେଇ ରଥରେ ବିଜେ କରାଇବା ଓ ବାଡାଇ ଆଣିବା ଏବଂ ଅଣସା ସମୟରେ ସେବା କରିବା

୮ **ପାଳିଆ ମହାପାତ୍ର:** ଅଣସର ସମୟରେ ସେବା

୯ **ମୁଦୁଲି:** ଜୟବିଜୟ ଦ୍ୱାରର ଜଗୁଆଳି ଓ ଭଣ୍ଡାର ଜଗୁଆଳି

୧୦ **ମହାଜନ:** ପାର୍ଶ୍ୱ ଦେବତାଙ୍କୁ ନେବା ଆଣିବା କରିବା

୧୧ **ମୁଖ ସିଂହାର ଦତ୍ତ:** ତିନି ଦିଅଁଙ୍କର ମୁଖଚିତ୍ର କରିବା

୧୨ **ଭଣ୍ଡାର ମେକାପ:** ଦେବତାଙ୍କ ପୋଷାକ, ଅଳଙ୍କାର ଓ ଭଣ୍ଡାର ଘର ଜଗିବା କାର୍ଯ୍ୟ

୧୩ **ଚାଙ୍ଗଡା ମେକାପ:** ଦେବତାଙ୍କ ପୋଷାକ ଓ ଅଳଙ୍କାରମାନ ପିନ୍ଧାଇବା ଓ ଡାଲାରେ ସଜାଇବା

୧୪ **ଖୁଣ୍ଟିଆ:** ପଶୁପାଳକ ମାନଙ୍କୁ ଡାକିବା ଓ



ଗଜପତି ମହାରାଜ

ଘୋଡାଙ୍କ ଖବର ବୁଝିବା

୧୫ ଅଖଣ୍ଡଳ ମେକାପ: ପ୍ରଦୀପ ଜଳାଇବା

୧୬ ଗରାବଡୁ: ପୂଜାପଣ୍ଡାଙ୍କ ନିକଟରେ ପାଣିଗରା ରଖିବା

୧୭ ପତ୍ରୀବଡୁ: ପୂଜାପଣ୍ଡାଙ୍କ ନିକଟରେ ଫୁଲତୁଳସୀ ରଖିବା

୧୮ ପନ୍ତିବଡୁ: ପୂଜାର ନୈବେଦ୍ୟ ପୂଜାପଣ୍ଡାଙ୍କ ନିକଟରେ ରଖିବା

୧୯ ସୁଆରବଡୁ: ପୂଜାସ୍ଥାନ ଝାଡିବା ଓ ଦେବତାଙ୍କ ଆଗରେ ଭୋଗ ଥୋଇବା

୨୦ ହଡପ ନାୟକ: ଭୋଗପରେ ଦେବତାଙ୍କୁ ପାନ ଓ ମସଲା ଯୋଗାଇବା

୨୧ ଶୁଦ ସୁଆର: ଭୋଗ ମାରା ହେଲେ ତାକୁ ଉଠାଇନେବା

୨୨ ଜଗିଆ: ଭୋଗ ସମୟରେ ପହରା ଦେବା



୨୩ ମୁଖପଖାଳ ପଡିଆରୀ: ଦେବତାଙ୍କ ଦାନ୍ତ କାଠି ଓ ମୁହଁଧୁଆ ପାଣି ଯୋଗାଇବା

୨୪ ଆସ୍ଥାନ ପଡିଆରୀ: ପର୍ବ ସମୟରେ ଡାକଦେବା

୨୫ ପଟ୍ଟଶେଯ ମେକାପ: ଦେବତାଙ୍କ ଶଯ୍ୟା ରଚନା କରିବା

୨୬ ପୁରାଣ ପଣ୍ଡା: ପୁରାଣ ପାଠ କରିବା

୨୭ ଡମ୍ବରୁ ସେବକ: ଜୟବିଜୟ ଦ୍ୱାର ନିକଟରେ ମେଘ ଡମ୍ବରୁ ବା ଟୁଲ୍ ଯୋଗାଇବା

୨୮ ସୁଆର: ପାକାଦି କାର୍ଯ୍ୟ କରିବା

୨୯ ବିରିବୁହା ସୁଆର: ସମର୍ଥାଠାରୁ ରାନ୍ଧିବା ପାଇଁ ଜିନିଷ ନେଇ ସୁଆରକୁ ଦେବା

୩୦ ମହାସୁଆର: ଭୋଗରାନ୍ଧିବାର ପ୍ରଧାନ ପାଚକ

୩୧ ରୋଷ ପାଇକ: ରୋଷଘରେ ଆଲୋକ ଦେବା ଓ ଭୋଗ ସଙ୍ଗେ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଆସିବା

୩୨ ଶିକାଧୁଆ ସୁଆର: ରୋଷଘରୁ ଭୋଗ ହେବାପାଇଁ ପଦାର୍ଥମାନ ମନ୍ଦିର ମଧ୍ୟକୁ ଯେଉଁ ଶିକାରେ ବୁହା ହୁଏ ତାକୁ ଧୋଇବା

୩୩ ବାହାର ଦେଉଳ ସୁଆର: ଜଗନ୍ନାଥଙ୍କ ବେଢା ମଧ୍ୟରେ ଥିବା ଅନ୍ୟ ଦେବତାଙ୍କ ଭୋଗପାକ କରିବା

୩୪ ପଡିଆରୀ, ଗୋଛିକାର ଓ ଦୁଆର ନାୟକ: ଦେଉଳର ଚାରିଦ୍ୱାର ଜଗିବା ଓ ଅମଣିଆଁ ଆସିଲା ବେଳେ ଦକ୍ଷିଣ ଦୁଆରରେ ବାଜେ ଲୋକଙ୍କୁ 'ଆଡ ହେ' ବୋଲି ଆଦେଶ ଦେବା

୩୫ ପ୍ରସାଦବଡୁ: ଶୁଖୁଲି ଅମଣିଆଁ ଦିଅଙ୍କ ଆଗରେ ରଖିବା

୩୬ ଛତାଧରା: ଯାତ୍ରା ସମୟରେ ଧଳା ଓ କଳା ଛତି ବୁହାଇବା

ଏତ୍‌ଦ ବ୍ୟତୀରେକ ସର୍ବମୋଟ ୯୭ଜଣ ସହାୟକ ରହିଥାନ୍ତି କିନ୍ତୁ ସେ ସମସ୍ତ ସେବକ ମାନଙ୍କ ମଧ୍ୟରୁ ଏହି ୩୬ ଜଣ ସେବକ ମୁଖ୍ୟ ହୋଇଥିବାରୁ ଏମାନଙ୍କୁ "ଛତିଶା ନିଯୋଗ" ନାମକରଣ କରାଯାଇଛି ।

# ଶ୍ରୀ ମନ୍ଦିର ତଥ୍ୟ

୧ ଶ୍ରୀମନ୍ଦିର ବାହାର ବେଢା/ ଆୟତନ: ୬୬୫ ଫୁଟ୍ ଓ ୬୪୦ ଫୁଟ୍

୨ ବାହାର ବେଢା ପାଚେରୀର ନାମ: ମେଘନାଦ ପାଚେରି



ଅରୁଣ ସ୍ତମ୍ଭ

୩ ମେଘନାଦ ପାଚେରୀର ଉଚ୍ଚତା: ୨୦ ଫୁଟ୍

୪ ଶ୍ରୀମନ୍ଦିର ଭିତର ବେଢା ପାଚେରୀର ନାମ: କୂର୍ମ ପାଚେରୀ ବା କୂର୍ମ ବେଢା

୫ ଶ୍ରୀ ମନ୍ଦିର ଚାରିଭାଗର ନାମ:

(କ) ବିମାନ / ମୁଖ୍ୟ ମନ୍ଦିର

(ଖ) ଜଗମୋହନ

(ଗ) ନାଟମଣ୍ଡପ

(ଘ) ଭୋଗମଣ୍ଡପ

୬ ମୁଖ୍ୟମନ୍ଦିର ନିର୍ମାଣ ଶୈଳୀ: ପଞ୍ଚରଥ

୭ ଦେଉଳ ପ୍ରକାର: ରେଖ ଦେଉଳ

୮ ଚତୁର୍ଧା ମୂର୍ତ୍ତିଙ୍କ ଆସ୍ଥାନର ନାମ: ରତ୍ନ ସିଂହାସନ

୯ ରତ୍ନ ସିଂହାସନର ମୁଖ୍ୟ ଦେବତା: ମହାପ୍ରଭୁ ବଳଦେବ, ମା ସୁଭଦ୍ରା, ମହାପ୍ରଭୁ ଶ୍ରୀ ଜଗନ୍ନାଥ, ପ୍ରଭୁ ସୁଦର୍ଶନ

୧୦ ଠାକୁରମାନଙ୍କ ସହ ରତ୍ନ ସିଂହାସନରେ ପୂଜା ପାଉଛନ୍ତି: ମା ଲକ୍ଷ୍ମୀ, ମା ସରସ୍ୱତୀ ଓ ମାଧବ

୧୧ ମୁଖ୍ୟ ମନ୍ଦିର ଓ ଜଗମୋହନ ସଂଯୋଗ କରୁଥିବା ଦ୍ୱାରର ନାମ: କଳାହାଟ ଦ୍ୱାର

୧୨ ଜଗମୋହନ ଓ ନାଟମଣ୍ଡପ ସଂଯୋଗ କରୁଥିବା ଦ୍ୱାରର ନାମ: ଜୟବିଜୟ ଦ୍ୱାର

## ଶ୍ରୀଜୀଉଙ୍କ ରଥଯାତ୍ରାରେ ପ୍ରମୁଖ ମଠମାନଙ୍କ

# ସେବା

୧ **ଏମାର ମଠ:** ରଥଯାତ୍ରା ବେଳେ ଫୁଲ ଓ ଚନ୍ଦନ ଯୋଗାଇବା, ପନ୍ତି ଭୋଗ, ଚାମର ଓ ଆଲଟସେବା

୨ **ଶଙ୍କରାଚାର୍ଯ୍ୟ ମଠ:** ଶ୍ରୀଗୁଣ୍ଡିଚା ଦିନ ବାଇଶି ପାହାଚରେ ପନ୍ତି ଭୋଜନ

୩ **ରାଘବଦାସ ମଠ:** ଟାହିଆ, ସର୍ବାଙ୍ଗ ନିମିତ୍ତ ପନ୍ତି ଭୋଗ, ପଣା ଭୋଗ

୪ **ସାନଛତା ମଠ:** ରଥଯାତ୍ରା ସମୟରେ ଶ୍ରୀ ଜୀଉମାନଙ୍କ ପହଣ୍ଡି ସମୟରେ ଆଲଟ ଚାମର ସେବା

୫ **ଓଡିଆ ମଠ:** ସର୍ବାଙ୍ଗ ନୀତିପାଇଁ ଚନ୍ଦନ, ଫୁଲୁରି ଲାଗି ତେଲ, ତ୍ରିମୁଣ୍ଡି ଚାନ୍ଦୁଆ, ରତ୍ନ ସିଂହାସନ ମାର୍ଜନା, ପନ୍ତି ଭୋଗ ଚାମର ଆଲଟ ସେବା

୬ **ଛାଉଣୀ ମଠ:** ଶ୍ରୀଗୁଣ୍ଡିଚା ଦିନ ଏହି ମଠରେ ଶ୍ରୀଜୀଉମାନଙ୍କର ସୋଲ ଚିତା ରଖାଯାଇଥାଏ, ପନ୍ତିଭୋଗ

୭ **ଜଗନ୍ନାଥ ବଲ୍ଲଭ ମଠ:** ଶ୍ରୀଜୀଉଙ୍କ ଶ୍ରୀଗୁଣ୍ଡିଚା ଯାତ୍ରାରେ ପନ୍ତିଭୋଗ, ମାଳଚୂଳ ଯୋଗାଇବା

୮ **ରାଧାବଲ୍ଲଭ ମଠ:** ପନ୍ତିଭୋଗ, ଆଲଟ ଓ ଚାମର ସେବା

୯ **ରାଧାକାନ୍ତ ମଠ:** ରଥ ସମ୍ମୁଖରେ କୀର୍ତ୍ତନ ସେବା

୧୦ **ଜଟିଆବାବା ମଠ:** ପହଣ୍ଡି ବିଜେ ଓ ନୀତି ପାଇଁ ପାଟଡୋରୀ ଯୋଗାଣ

୧୧ **ପାପୁଡିଆ ମଠ:** ଚାମର ଆଲଟ ସେବା, ପନ୍ତି ଭୋଗ

୧୨ **ରେବସା ମଠ:** ଦେବସ୍ନାନ ପୂର୍ଣ୍ଣିମା ଓ ରଥଯାତ୍ରାରେ ପନ୍ତି ଭୋଗ

୧୩ **ନାଗା ମଠ:** ଠାକୁରମାନଙ୍କ ଶ୍ରୀ ଅଙ୍ଗ ଚିତ୍ର ଓ ନୂଆ ଲୁଗାରେ ବେଶ

୧୪ **ସମାଧି ମଠ:** ରଥ ସମ୍ମୁଖରେ ଠାକୁରମାନଙ୍କୁ ପନ୍ତି ଭୋଗ

୧୫ **ଝାଞ୍ଜପିଠା ମଠ:** ଶ୍ରୀମନ୍ଦିର ଭିତର ବେଢା ଓ ସିଂହଦ୍ୱାର ସମ୍ମୁଖରେ କୀର୍ତ୍ତନ ସେବା। ଘୋଷଯାତ୍ରାର ଅବ୍ୟବହିତ ପୂର୍ବରୁ ମହନ୍ତଙ୍କ ନେତୃତ୍ୱରେ ଅନ୍ୟାନ୍ୟ ଗୌଡିୟ ବୈଷ୍ଣବ ଓ ବାବାଜୀମାନଙ୍କୁ ନେଇ ଶ୍ରୀଗୁଣ୍ଡିଚା ମନ୍ଦିରର ସମାର୍ଜନ ସେବା (ଏହା ଗୁଣ୍ଡିଚା ମାର୍ଜନା ଲୀଳା ନମରେ ପରିଚିତ)

୧୬ **ଦଶାବତାର ମଠ:** ରଥଉପରେ ଠାକୁରମାନେ ବିରାଜ କରୁଥିବା ସମୟରେ ଅମୁଣିଆ ପନ୍ତି ଭୋଗ ସାମଗ୍ରୀର ସୁରକ୍ଷା। ମଠ ସମ୍ମୁଖରେ ରଥାରୂଢ ଠାକୁରମାନଙ୍କ ନିମନ୍ତେ ମଠର ପବିତ୍ର କୂପର ଜଳରେ ନୀତି ସଂପାଦନ। ଅତୀତରେ କବିରାଜ ଜୟଦେବ ରଚିତ 'ଗୀତଗୋବିନ୍ଦ'ଗାନ ପାଇଁ ଦେବଦାସୀ ନୃତ୍ୟ ସେବା ଏବଂ ଖଣ୍ଡୁଆ ସେବା


ଶ୍ରୀ ଲୋକନାଥ ମନ୍ଦିର


ବଡଦାଣ୍ଡ

# ଦେବଦଳନ

## ରଥ ବିଷୟରେ ସମ୍ୟକ ସୂଚନା

**ଦେବୀ ସୁଭଦ୍ରାଙ୍କ ରଥର ନାମ:**
ଦେବଦଳନ/ ଦର୍ପଦଳନ/ ପଦ୍ମଧ୍ୱଜ

**ରଥର ଘୋଡାର ରଙ୍ଗ ଓ ସଂଖ୍ୟା:**
ନାଲି ଓ ଚାରି

**ରଥ ଆବରଣ କନାର ରଙ୍ଗ:**
ନାଲି-କଳା

**ରଥର ଉଚ୍ଚତାଃ**

୪୪ଫୁଟ୍ ୬ ଇଞ୍ଚ୍

**ରଥ ଚକ ସଂଖ୍ୟା ଓ ଉଚ୍ଚତାଃ**

୧୨ଟି ଓ ୬ଫୁଟ୍ ୮ ଇଞ୍ଚ୍

**ରଥ ଆୟୁଧଃ**

ପଦ୍ମ କହ୍ଲାର

**ରଥ ଦଉଡିର ନାମଃ**

ସ୍ୱର୍ଣଚୂଡ ନାଗ

**ରଥ ଦ୍ୱାରପାଳ ନାମଃ**

ଗଙ୍ଗା ଯମୂନା

**ରଥ ଶୁଆ ଯୁଗଳର ନାମଃ**

ସୁପର୍ଣ୍ଣ, ଦ୍ୱାସୁପର୍ଣ୍ଣ

**ରଥ ଦେବୀଃ**

ଶ୍ରୀ ଭୂ

**ରଥ ଶୁନ୍ୟ ଚକ୍ରର ନାମଃ**

ଦୀପ୍ତି




**ରଥ ସାରଥୀଙ୍କ ନାମଃ**

ଅର୍ଜୁନ

**ରଥ ଘୋଡାର ନାମଃ**

ରୋଚିକା, ମୋଚିକା, ଜିତା, ଅପରାଜିତା (ଅନ୍ୟନାମରେ ପ୍ରଜ୍ଞା, ଅନୁଜ୍ଞା, ଘୋରା, ଅଘୋରା)

**ରଥ ରତ୍ନଃ**

ମାଣିକ୍ୟ

**ଦଧିନଉତିର ନାମଃ**

ହିରଣ୍ମୟୀ

ଏଠାରେ ପ୍ରକାଶିତ ସମସ୍ତ ତଥ୍ୟ ସମ୍ବାଦର ରଥଯାତ୍ରା ବିଶେଷାଙ୍କରୁ ଉଦ୍ଧୃତ। ଏବଂ ଏହି ଆଲେଖ୍ୟରେ ପ୍ରକାଶିତ ସମସ୍ତ ଚିତ୍ର ଆମକୁ ପଠାଇଛନ୍ତି, ଶ୍ରୀ ସଞ୍ଜୟ ସାହୁ, ୪୮ ଶହୀଦ୍ ନଗର, ଭୁବନେଶ୍ୱର।



ଶଙ୍ଖକ୍ଷେତ୍ର



ସ୍ୱର୍ଗଦ୍ୱାର




# ଚିହ୍ନା ଅଚିହ୍ନା

କେବେ ହେଲା ଚିହ୍ନା ତୁମ ସାଥେ ଜାଣିନି
ପ୍ରଥମ ଦର୍ଶନେ ବି ଅପରିଚିତ ମଣିନି।
ବରଂ ନ ଦେଖିଲେ କେତେ ଦିନ ବିରହର
ଆସ୍ତରଣ
ଛାଇଯାଏ ହୃଦୟରେ କରି ଏକ ଆୟୋଜନ।
ଆଖି ବୁଜିଲେ ଅନ୍ଧାରେ ଜଳଜଳ ଦିଶେ ତୋ
ବଡଦେଉଳ
ନୀଳଚକ୍ର ବାନା ତୋ ଚକାନୟନ ସେହି
ବାଙ୍କଚୂଳ।
ମନ ଚାହେଁ ବୁଡିଯିବି ତୋ ଛାତି ସାଗରେ
ଝଙ୍କୁରିତ ହୁଏ ପ୍ରାଣ ମିଳନ ବୀଣାର ତାରେ।
ଯେତେଥର ଯାଏ ଦର୍ଶନ ଆଶାରେ
ଉଦ୍‌ବିଗ୍ନ ହୁଏ ଅର୍ଦ୍ଧପଥୁ ଅନ୍ତରେ ବାହାରେ।
ସଦାକାଳେ ସେହି ରୂପ ଶ୍ରୀମୁଖର ଭିଆଣି
ନୁଆଭଳି କରେ ଆକର୍ଷଣ କାହିଁକି କେଜାଣି।
ସଂସାରର ସକଳ ଅନ୍ୱିତ ବିସର୍ଜିଲି ତୁମେ ନିଅ
ତୁମେ ମୋର ପ୍ରାଣସଖା ପ୍ରିୟମୋର ଭବଦୀୟ।
ଦୁର୍ଲଂଘ୍ୟ ପାଚେରୀ ଲଂଘେ ତୁମରି କୃପାରେ
ତ୍ରିମୂର୍ତ୍ତି ଦର୍ଶନ କରେ ଗରୁଡ ପଛରେ।
ଶେଷ ଆଶା ନିବେଦନ ଶୁଣ ପ୍ରାଣ ସାଇଁ
ଏ ଜୀବନ ଯାଉ ତୁମ ଶ୍ରୀ ମୁଖକୁ ଚାହିଁ।
ମୋ ଶବର ଦାହ ହେଉ ସରଗ ଦୁଆରେ
ଯେତେ ପାପପୂଣ୍ୟ ଛାଡିଯିବି ସେହିଠାରେ।

## କୁସୁମାଂଜଳି

ଶ୍ରୀମତୀ ପ୍ରସନ୍ନ କୁମାରୀ ଦେବୀ
ଇଂଜିନିୟରିଂ ସ୍କୁଲ୍ ରୋଡ, ବ୍ରହ୍ମପୁର-୧୦
ଗଞ୍ଜାମ (ଓଡିଶା)

# ସାଗରରେ ମିଶି ନଦୀ

ସାଗରରେ ମିଶି ନଦୀତ ଖୋଜେନା
ଆପଣାର ପରିଚୟ
ସୁଖରେ ହଜିଲେ ନ ଥାଏ ଶୋଚନା
ଜୟ ଅବା ପରାଜୟ।୧।
ପୃଥିବୀକୁ ଛୁଇଁ ଆକାଶ କହେନା
କିଛି ପାଇ ନାହିଁ ବୋଲି
ପ୍ରୀତିର ପଥିକ ସେନେହର ଝର
ଅବାଟ ଯାଏନା ଭୁଲି।
ଜହ୍ନ ନୀଳକଇଁ ଅଦେହୀ ମିଳନ
ଚିରକାଳ ମଧୁମୟ।୨।
ପ୍ରଜାପତି ଚୁମି ଚାଲିଗଲା ପରେ
ନ ଥାଏ ଫୁଲର ଦୁଃଖ
ଏମିତି ରସିକ ପାଇଁ ତା' ଜୀବନ
ଏକା ଜଳିବାରେ ସୁଖ
ଅଦିନରେ କେବେ ଝରିଯିବ ବୋଲି
ବରଷା କରେ ନା ଭୟ।୩।

ଲଳିତ ତରଙ୍ଗ,
**ଇଁ ପ୍ରଦୀପ ଷଡଙ୍ଗୀ,**
ସ୍ୱୀକୃତ ବେତାର ଗୀତିକାର
ଲୋଚାପଡା ମିନିବେଙ୍କ ରୋଡ
ପୋ: ନିମଖଣ୍ଡି-୭୬୧୦୦୧
ଜିଲ୍ଲା: ଗଞ୍ଜାମ (ଓଡିଶା)

# ଉତ୍ତରମେରୁର ଉତ୍ତର

ଆଦରର ଭାଇ ଓ ଭଉଣୀମାନେ !



ସୁଦୂରରୁ ମୋର ସ୍ନେହ ନେବ। ତୁମ ସମସ୍ତଙ୍କ ଚିଠି ଠିକ୍ ସମୟରେ ପାଇଛି। ମୁଁ ଡିସେମ୍ବର ଓ ଜାନୁୟାରୀ ମାସରେ ଭାରତ ଭ୍ରମଣରେ ଯାଇଥିଲି। ଓଡିଶାରହଣି ବେଳେ ବହୁ ଭାଇ ଭଉଣୀ ମାନଙ୍କ ସହ ସାକ୍ଷାତ ହୋଇଥିବାରୁ ଆନନ୍ଦ ଅନୁଭବ କଲି ଏବଂ ଅନେକଙ୍କ ସହିତ ସାକ୍ଷାତ ହୋଇପାରି ନଥିବାରୁ ଦୁଃଖିତ ମଧ୍ୟ। ମୋର ଆଶା ତୁମମାନଙ୍କ ସ୍ୱାସ୍ଥ୍ୟ ଖୁବ୍ ଭଲରେ ଥିବ।

ଏବେ ମୁଁ ଓଡିଶାରୁ ଫେରି ତୁମମାନଙ୍କ ଠାରୁ ଆସିଥିବା ସମସ୍ତ ଚିଠି ଓ ନୂତନ ବର୍ଷର ଅଭିନନ୍ଦନ ପତ୍ର ଗୋଟି ଗୋଟି କରି ଚିଠି ଖୋଲି ପଢିଲି। ଖୁବ୍ ଆନନ୍ଦ ଅନୁଭବ କଲି। ତୁମେମାନେ ବିଭିନ୍ନ ପ୍ରକାରର ପ୍ରଶ୍ନ ମୋତେ ପଚାରିଛ। ଯେଉଁ ସବୁ ପ୍ରଶ୍ନଗୁଡିକ ଅଧିକ ପରିମାଣରେ ମୁଁ ପାଉଛି ସେଗୁଡିକର ଉତ୍ତର ଏହି ଚିଠି ମାଧ୍ୟମରେ ଲେଖୁଛି।

ଗତ ଡିସେମ୍ବର ମାସ ପନ୍ଦର ତାରିଖ ସକାଳ ପାଞ୍ଚଟା ତିରିଶି ମିନିଟ୍ ଅର୍ଥାତ୍ ଭାରତୀୟ ସମୟ ଦଶଟା (ସକାଳ)ରେ ସୁଇଡେନ୍‌ର ଲ୍ୟାଣ୍ଡଭେତର ବିମାନବନ୍ଦରରୁ ଫ୍ରାନ୍ସ୍ ଦେଶର ଏକ ବିମାନରେ ପ୍ୟାରିସ୍‌ରେ ଆସି ଓହ୍ଲାଇଲୁ। ସେଠାରେ ଅନ୍ୟ ଏକ ବିରାଟ ବୋଇଂ ଦ୍ୱାରା ନୂଆଦିଲ୍ଲୀ ଅଭିମୁଖେ ଯାତ୍ରା କଲୁ। ସେଥିରେ ପ୍ରାୟ ୫୫୦ଜଣ ଯାତ୍ରୀ ଥିଲେ। ବ୍ରେକ୍‌ଫାଷ୍ଟ ଠାରୁ ଆରମ୍ଭ କରି ଲଞ୍ଚ ଡିନର୍ ସହ ଶୋଇବାପାଇଁ କୋମଳ ଶେଯ ମଧ୍ୟ ଦିଆଯାଏ। ବିମାନ ପରିଚାରିକା ମାନେ ଦେଖିବାକୁ ଯେଉଳି ସୁନ୍ଦର, ବ୍ୟବହାର ମଧ୍ୟ ସେଉଳି ଚମତ୍କାର। ଆମେ ପ୍ରାୟ ଭୂମିଠାରୁ ୪/୫ କିମି ଉଚ୍ଚରେ ଉଡି ଆସୁଥାଉ। ଶ୍ୱାସରୁଦ୍ଧ ହେଲେ ଅମ୍ଳଜାନ ଆଧୁନିକ ପ୍ରଣାଳୀରେ ଗ୍ରହଣ କରିବାର ବ୍ୟବସ୍ଥା ଥାଏ।



ଖଣ୍ଡ ଖଣ୍ଡ ମେଘସବୁ ଆମଠାରୁ ବହୁ ନିମ୍ନରେ ଉଡୁଥା'ନ୍ତି। ଆକାଶଟା ଗାଢ ନୀଳ ରଙ୍ଗ ବୋଳାହେଲା ଭଳି ଦେଖାଯାଉଥାଏ।

ଓଡିଶାର କବି, ଲେଖକ ତଥା ଶିକ୍ଷାବିତ୍ ସୀତାକାନ୍ତ ମହାପାତ୍ର (ଶିକ୍ଷା ବିଭାଗର ସେକ୍ରେଟାରୀ) ଆମକୁ ନିଜ ଗାଡିରେ ପ୍ରଥମେ ତା'ଙ୍କ ବାସଭବନକୁ ଆଣିଲେ। ତାଙ୍କ ସହିତ କଳା, ସଙ୍ଗୀତ, ଶିକ୍ଷା ଓ ଓଡିଆ ପଲ୍ଲୀଜୀବନ ବିଷୟରେ



କଥାବାର୍ତ୍ତା ହେଲେ। ସେଦିନ ରାତିରେ ସେ ଆମକୁ ଆଣି ରାଜ୍ୟ ସରକାରଙ୍କ ଅତିଥିଭବନରେ ରହିବାର ବନ୍ଦୋବସ୍ତ କରିଦେଲେ। ପରେ ମୁଁ ଓଡିଶାର ହସ୍ତତନ୍ତ ସମ୍ବନ୍ଧରେ ଫିଲ୍ମ କରିବା ଉଦ୍ଦେଶ୍ୟରେ ବୌଦ୍ଧ, ସୋନପୁର, ପିପିଲି, ନୂଆପାଟଣା ପ୍ରଭୃତି ଜାଗାକୁ ଚାଲିଗଲି। ସମସ୍ତ କାର୍ଯ୍ୟ ସାରି ମୁଁ ପୁଣି ଭୁବନେଶ୍ୱର ଫେରି ଆସିଲି, ସୁଇଡେନ୍ ପ୍ରତ୍ୟାବର୍ତ୍ତନ କରିବା ପାଇଁ। ଖୁବ ଅଳ୍ପଦିନ ଓଡିଶା ରହଣି ମଧ୍ୟରେ ମୁଁ ଓ ମୋର ମିସେସ (ଧର୍ମପତ୍ନୀ) ବହୁ ସୁନ୍ଦର ଲୋକଙ୍କ ସହ ସାକ୍ଷାତ କରିଥିଲୁ। ସେମାନେ ଆମକୁ ବହୁ ଦିଗରେ ସାହାଯ୍ୟ କରିଥିଲେ। ତେଣୁ ଆମେ ସେମାନଙ୍କୁ ଧନ୍ୟବାଦ ଦେଉଛୁ। ଚାରି ସପ୍ତାହ ମଧ୍ୟରେ ଆମେ ପ୍ରାୟ ୪୦,୦୦୦ କି ମିରୁ ଅଧିକ ଆକାଶପଥ, ସ୍ଥଳପଥ ଓ ଜଳପଥ ଅତିକ୍ରମ କରି ସର୍ବଶେଷରେ ଏହି ସୁଇଡେନ୍‌ରେ ପହଞ୍ଚିଲୁ। ଉଡ୍ଡୟନ ସମୟରେ ବିଭିନ୍ନ ଦେଶ, ମହାଦେଶ,






ସମୁଦ୍ର, ମହାସମୁଦ୍ର, ପାହାଡ, ପର୍ବତ, ଦ୍ୱୀପ ଓ ମରୁଭୂମିର ଦୃଶ୍ୟ ଦେଖି ଯେତିକି ଆନନ୍ଦ ଅନୁଭବ କଲୁ ସେତିକି ମଧ୍ୟ କ୍ଲାନ୍ତ ଅନୁଭବ କଲୁ। ଏଠାରେ ଘରେ ପହଞ୍ଚି ମୁଁ ପ୍ରଥମେ କିଛିଦିନ ଶୋଇଲି। ଶେଯ ଉପରେ ବିଶ୍ରାମ ନେଲେ ମଧ୍ୟ ମୋର ଶରୀର ଆକାଶର ବାଦଲ ଠାରୁ ଆହୁରି ଅଧିକ ଉଚ୍ଚରେ ଭାସୁଥିଲା ଭଳି ଲାଗୁଥାଏ।

ଏଠାରେ ବର୍ତ୍ତମାନ ଭୀଷଣ ବରଫ ପଡୁଛି। ରାସ୍ତାଘାଟ ମାନଙ୍କରେ ପ୍ରତିଦିନ ଟ୍ରକ ଟ୍ରକ ଲୁଣ ପକାଯାଉଛି। କାହିଁକିନା ବରଫ ପଡିଥିବା ରାସ୍ତା ଖସଡା ହେବନାହିଁ। କାର ଦୁର୍ଘଟଣା ହେବାର ସମ୍ଭାବନା ବହୁତ। ମୁଁ ବର୍ତ୍ତମାନ ମୋର କାଚଝରକା ଦେଇ ଦେଖୁଛି। ଛୋଟ ଛୋଟ ପିଲା ମାନେ ନାଲି ନୀଳ ଡ୍ରେସ୍ ପିନ୍ଧି ବରଫ ଖସଡା ଖେଳସବୁ ବରଫ ଉପରେ ଖେଳୁଛନ୍ତି। ଆମେ ପିଲାଦିନେ ଯେଉଁଭଳି ନଦୀବାଲିରେ ମନ୍ଦିର ଆଉ କଣ୍ଢେଇ ସବୁ ତିଆରି କରି ଖେଳୁ, ଏଠାରେ ମଧ୍ୟ ପିଲା ମାନେ ସେହିଭଳି କୋମଳ ବରଫ ଦ୍ୱାରା କଣ୍ଢେଇ ପ୍ରସ୍ତୁତ କରି ଖେଳୁଛନ୍ତି। ଏହାସବୁ ଦେଖି ମୋ ପିଲା ଦିନର ବହୁ ଘଟଣା ଆଖି ଆଗରେ ନାଚି ଉଠୁଛି। ପୁଣି ସେହି ବାଲ୍ୟ ଅବସ୍ଥାକୁ ଫେରିଯିବାକୁ ଇଚ୍ଛା ହେଉଛି। ଧୂଳିରେ ଖେଳିବାକୁ ଇଚ୍ଛା ହେଉଛି।

ମୋର ମନେପଡେ। ମୁଁ ତୃତୀୟ ନା ଚତୁର୍ଥ ଶ୍ରେଣୀରେ ଆଠମଲ୍ଲିକରେ ପଢୁଥାଏ। ସମୁଦାୟ ଶ୍ରେଣୀରେ ବୋଧହୁଏ ସତର ଅଠର ଜଣ ଛାତ୍ରଛାତ୍ରୀ ଥାଆନ୍ତି। ସେଥିରୁ ସାତ ଆଠ ଜଣ ପୁଅପିଲା କଣ୍ଢେଇ ଖେଳ ବା ବାଲିରେ ଖେଳ ପସନ୍ଦ କରୁ ନଥିଲେ। ବାକି ଦଶ ଏଗାରଜଣ ଝିଅପିଲା ବାଲିରେ ଘର ତୋଳିବା, କଣ୍ଢେଇ ଖେଳ



ଖେଳିବାକୁ ପସନ୍ଦ କରୁଥାଆନ୍ତି।

ହେଲେ ସେମାନେ ଗୋଟିଏ ଦଳରେ ଖେଳୁ ନ ଥିଲେ। ଦୁଇଟି ଦଳ ହୋଇ ପ୍ରାୟ ସବୁବେଳେ ଖେଳୁଥିଲେ। ସେମାନେ ବାଲିରେ ଘର, ମନ୍ଦିର, ବାଲିରେ କୂଅ, ବାଲିରେ ସଡକ, କାଛବାଡ ପ୍ରଭୃତି କରି ପୁଣି ବାଲିରେ ଭାତ, ଡାଲି, ତରକାରୀ ରୋଷେଇ କରିବା ଭଳି କରି ଖେଳୁଥିଲେ। ଯେତେବେଳେ କନାର କଣ୍ଢେଇ ଠାକୁର ତିଆରି କରିବା ସମୟ ହୁଏ ସେହି ଦୁଇ ଦଳରୁ ମୋତେ ଡାକରା ଆସେ, ସେମାନେ ମୋତେ ପଚାରନ୍ତି, "ପ୍ରଦ୍ୟୁମ୍ନ, ତୁ ଆମ ଦଳରେ ନା ତାଙ୍କ ଦଳରେ?" ମୁଁ ବଡ ଅଡୁଆରେ ପଡେ। ସମସ୍ତେ ତ ମୋ ଏକା ଶ୍ରେଣୀର ସାଥୀ, କାହା ଦଳକୁ ଯିବି? ତେଣୁ ମୁଁ କହେ ଯେ, "ମୁଁ ତୁମ ଦୁଇ ଦଳ ପାଇଁ କନାକଣ୍ଢେଇରେ ଚିତ୍ରସବୁ ଆଙ୍କିଦେବି, ହେଲେ ମୁଁ ମୋର ଏକୁଟିଆ ଗୋଟିଏ ବାଲିର ଉଆସ ତୋଳିବି।" ସେହି ଦୁଇ ଦଳ ଝିଅଙ୍କ ପାଇଁ ମୁଁ କଣ୍ଢେଇ କରିଦିଏ। ସେଇ ଝିଅମାନେ ମୋତେ



ବାଲିର ଭାତ, ଡାଲି, ତରକାରୀ ସହିତ ଠାକୁର ଭୋଗ କହି ଖୁଆନ୍ତି। ତା'ପରେ ମୁଁ ମୋର ଅଲଗା ବାଲିର ଉଆସ, କୋଣାର୍କ ମନ୍ଦିର ଗଢେ। କାଗଜର ହାତୀ, ଘୋଡାସବାର ସବୁ କରି ବିଭିନ୍ନ ରଙ୍ଗ କାଗଜରେ ଫୁଲ ତିଆରି କରି ବାଲି ଉଆସଟିକୁ ସଜାଇଦିଏ। ବାଲି କୋଣାର୍କର ଚୂଳରେ କାଗଜ ପତାକା ଫରଫର କରି ଉଡାଏ। ସେହି ଦୁଇ ଦଳ ସାଥୀମାନେ ମୋର ବାଲି ଉଆସର ସୁନ୍ଦର ରୂପ ଦେଖି ତାଙ୍କ ବାଲିରେ ତିଆରି ଉଆସ ସହ ତୁଳନା କରି ବସନ୍ତି। ତାଙ୍କ ବାଲି ଉଆସ ଗୁଡିକ ସୁନ୍ଦର ହୋଇନି କହି ଭାଙ୍ଗିପକାନ୍ତି। ଏବଂ ମୋ ପାଖକୁ ଆସନ୍ତି ଦେଖିବା ପାଇଁ। ମୁଁ କହେ, " କିଏ ମୋ ସହିତ ମିଶିବ, ମୋ ଉଆସରେ ରହିବ?" ସମସ୍ତେ ହାତ ଟେକନ୍ତି।

ତା' ପରେ ଆରମ୍ଭ ହୁଏ ଡ୍ରାମାର ଖେଳ।

ଅବଶିଷ୍ଟାଂଶ ଆଗାମୀ ସଂସ୍କରଣରେ

**ଅଜଣା ଫୁଲର ମହକ: ଲୁସିଆରାଣୀ**

**ଚିତ୍ରଶିଳ୍ପୀ ପି କେ ମହାନନ୍ଦିଆ (ସ୍ୱିଡେନ୍)**

# ଛାତିକୁ ହର୍ଟ କରୁଛି

*ଆଲ୍‌ବମ୍‌ର ବ୍ୟାଧିରେ ଏବେ ଆକ୍ରାନ୍ତ ହେଲେଣି ସବୁ ଓଡିଆ। ହାଟ, ବଜାର, ଖଟି, ଘର ସବୁଠି ଆଲ୍‌ବମ୍*



*ଗୀତର ଗହଳ ଚହଳ। ଆଉ ଗୀତ ସବୁ ଏମିତି ଯେ ଶୁଣିଲେ ହିଁ ମନ ଚିଟା ହୋଇଯାଉଛି। କେବେ ଦିନେ ଓଡିଆ ଗୀତ ଶୁଣିଲେ ମନ ପୁଲକି ଯାଉଥିଲା, ଆଜି ଓଡିଆ ଗୀତ ଶୁଣିଲେ ଛାତି ଦୁଲୁକି ଯାଉଛି। ବାଜେ ଓ ଅଶ୍ଳୀଳ ଗୀତର ଭିଡରେ ଲୁଚି ଯାଉଚି ଭଲ ଗୀତ। କାହିଁକି ଏ ବିଷର ଧାରା ଆମ ଜନଜୀବନରେ ଚରିଚରି ଯାଉଛି, ତାହାର କାରଣ ଖୋଜିବାକୁ କେହି ନାହାନ୍ତି କି ଏହି ଜହରକୁ ପୋଛି ଦେବାକୁ କେହି ନାହାନ୍ତି। ଓଡିଆ ଗୀତରେ ଏବେ ସମସ୍ତେ ପ୍ରାପ୍ତ ବୟସ୍କ। ଓଡିଆ ଆଲ୍‌ବମ୍ ଗୀତରେ ଏବେ ଲକ୍ଷ୍ମଣରେଖା ନାହିଁ। ଯିଏ ଯାହା ଲେଖିଲା ଗୀତ। ଯିଏ ଯାହା ଗାଇଲା ବି ଗୀତ। ଛାତିକୁ ସିଧା ହର୍ଟ କରୁଚି ଓଡିଆ ଗୀତ। ଏଥିପାଇଁ ଔଷଦ ନାହିଁ। ଓଡିଆ ଆଲ୍‌ବମ୍ ଗୀତର ଅତୀତ ବର୍ତ୍ତମାନ ଓ ଭବିଷ୍ୟତକୁ ନେଇ ଆମର ଏ ମାସର ବିଶେଷ ଆଲେଖ୍ୟ।*

ସବୁଦିନ ବଜାରକୁ ଆସୁଛି ନୁଆ ନୁଆ ଆଲ୍‌ବମ୍ ଗୀତ। ତୁହାକୁ ତୁହା ବାଜୁଛି। ଦୁରଦର୍ଶନରୁ ଇ-ଟିଭି, ଓ-ଟିଭି ପର୍ଯ୍ୟନ୍ତ। ପୁଣି ଭିସିଡି ବି ବାହାରୁଚି ଗଦା ଗଦା। ଆଉ ଗୀତ ସବୁ କଣ ତା'ର କିଛି ନମୁନା ନିଅନ୍ତୁ: ଗୋରୀଲୋ ସଂକରାନ୍ତିରେ ହେବୁନି ଗେଲ, ନବମ ଶ୍ରେଣୀ ଝିଅଟା ଛାତିକୁ ମୋ ହର୍ଟ କରୁଛି, ରସିକିଆ ହିନ୍ଦୀ ମାଷ୍ଟର, ନାତୁଣୀଲୋ ନାତୁଣୀ। ଏହି ଗୀତ ସବୁ ଦ୍ୱିଅର୍ଥ ବୋଧକ ନୁହେଁ ବରଂ ସିଧା ସିଧା ଅଶ୍ଳୀଳ। ହାଟରେ ବାଜୁଛି, ବାଟରେ ବାଜୁଛି, ଟିଭିରେ ବାଜୁଛି। ଏହି ଅଶ୍ଳୀଳ



ଆଲ୍‌ବମ୍ ଗୀତର ଚର୍ଚ୍ଚା କରିବା ଆଗରୁ ଆସନ୍ତୁ ଆଲ୍‌ବମ୍‌ର ଇତିହାସକୁ ଯିବା।

## ଏଇଠୁ ଆରମ୍ଭ

୧୯୯୫ ମସିହାର ଜାନୁଆରୀ ୯ ତାରିଖ, ଆଞ୍ଚଳିକ ଦୂରଦର୍ଶନରେ ପ୍ରସାରିତ ହେଲା ସାର୍ଥକ ପ୍ରଡକ୍ସନ୍‌ସ ନିବେଦିତ, 'ମହାଲକ୍ଷ୍ମୀ ପୁରାଣ'। ମାଣବସା ବହିର ସଂଗୀତ ଦୃଶ୍ୟ ଆସିଲା ଦୂରଦର୍ଶନର ପରଦାରେ। ଏହାହିଁ ଥିଲା ପ୍ରାରମ୍ଭିକ ରୂପ। ମାଣବସା ଗୀତର ଭାବକୁ ପରଦାରେ ପହଁରାଇବାର ମୋହ ଏବଂ ଏକ ଆଧ୍ୟତ୍ମିକ ଚେତନାକୁ ଚହଲାଇ ଦେବାର ଆଶା ରଖି ଆରମ୍ଭ ହେଲା ଏହି ଧାରା। ଏହି ସଂସ୍ଥା ପରେ ପରେ ୧୯୯୬ ମସିହାରେ ଭଜନ ଆଲ୍‌ବମ୍ କାର୍ଯ୍ୟକ୍ରମର ପ୍ରସାରଣ ଦୂରଦର୍ଶନରେ ଆରମ୍ଭ ହେଲା। ନାମ ରହିଲା ଭଜନ ସଂଧ୍ୟା। ପରେପରେ ୨୦୦୦ ମସିହାରୁ ସାର୍ଥକ ପକ୍ଷରୁ ଦୂରଦର୍ଶନରେ ପ୍ରସାରିତ ହେଲା 'ଝଙ୍କାର'। ଏହି ଝଙ୍କାର ହିଁ ମୋଟାମୋଟି ଆଧୁନିକ ଆଲ୍‌ବମ୍ ଗୀତର ବୀଜ ରୋପିଲା। ଗୀତ ଆଲ୍‌ବମ୍ ନାମରେ ଯାହା ସବୁ ବାହାରୁଥିଲା, ସେ ସବୁ ଥିଲା ସ୍ୱଚ୍ଛ, ମଧୁର ଓ ମନୋରଞ୍ଜକ, କିନ୍ତୁ ଏହା ପରବର୍ତ୍ତୀ ଅଧ୍ୟାୟରେ ଯେଉଁ ସବୁ ଗୀତ ଆସିଲା



ସବୁଥିଲା, ଝାବଡା, ଆବୁରାଜାବୁରା ଆଉ ଊଣାଧିକେ ଅଶ୍ଳୀଳ।

ଓଡିଶାରେ ଆଲ୍‌ବମ୍‌ର ପ୍ରସାର କରିଥିଲା ଦୂରଦର୍ଶନ, ଏହାର ପ୍ରଯୋଜକ କିନ୍ତୁ ଥିଲେ ବେସରକାରୀ ସଂସ୍ଥା। ସାର୍ଥକର ମାଣବସା ଗୁରୁବାର ଆଲ୍‌ବମ୍‌ର ପ୍ରାରମ୍ଭିକ ରୂପକୁ ଆଧୁନିକତାର ଛାପ ଦେଲା ଟିଭି ଧାରାବାହିକ 'ମହକେ ରଜନୀଗନ୍ଧା'। ପୁରୁଣା ଲୋକପ୍ରିୟ ଗୀତ ସବୁକୁ ରିରେକର୍ଡିଂ କରି, ତାହାକୁ ସୁଟିଂ କରି ଛଡଗଲା ମହକେ ରଜନୀଗନ୍ଧାରେ। ଯେହେତୁ ଗୀତ ଆଗରୁ ହିଟ୍ ଥିଲା, ଧାରାବାହିକ ବି ହିଟ୍





ହୋଇଗଲା। ଏହା ୧୯୯୫ର ଶେଷ ଭାଗର କଥା। ଅନେକ ଦର୍ଶକଙ୍କ ଏବେ ବି ମନେ ଥିବ ଏ ଧାରାବାହିକ। ଭିଭ୍ ଟିଭି ଥିଲା .

ପ୍ରଯୋଜକ, ଜୟ୍ ପ୍ରକାଶ ମହାନ୍ତି ଥିଲେ ନିର୍ଦ୍ଦେଶକ। ଗୀତ ସବୁଥିଲା: ହେ ଫଗୁଣ ତୁମେ ଗଲା ପରେ ପରେ/ ରାତିରେ ଆମ ଘର ଲୋକ ସବୁ/ ତୁମକୁ ସାଥୀ ମୋ ଭଲ ପାଇଁ/ ଜହ୍ନରେ ଜହ୍ନ। ଯେଉଁ ସବୁ ଆଧୁନିକ ଗୀତସବୁ ଏକଦା ଚହଳ ପକାଇଥିଲା ସେସବୁର ନୂଆ ମ୍ୟୁଜିକ୍ ଆରେଞ୍ଜ କରାଇ ମୂଳ ସ୍ୱରକୁ ଅକ୍ଷୁର୍ଣ୍ଣ ରଖି ଗୀତ କଲେ ବ୍ରଜେନ୍ଦ୍ର ନାୟକ। ନୂଆ ଗାୟକ ଗାୟିକା ଆସିଲେ, ଯେମିତି ଅକ୍ଷୟ୍ ମହାନ୍ତିଙ୍କ କଣ୍ଠସ୍ୱରକୁ ନକଲ କରି ଗାଉଥିବା ପ୍ରଶାନ୍ତ ମୁଦୁଲି। ଆଉ ଆସିଲେ ଅଭିନୟରେ ସାତ୍ୟକୀ ମିଶ୍ର, ଜ୍ୟୋତି ମିଶ୍ର, ଶ୍ରୀତମ୍ ଦାସ୍, କୁନା ତ୍ରିପାଠୀ। ଏଯାଏ ଏକରକମ ଭଲ ଥିଲା, ସବୁ ଠିକ୍ଠାକ୍ ଥିଲା। ଏହା ପରେ ପରେ ସୁର ଲହରୀ ଓ ମହକେ ରଜନୀଗନ୍ଧା ଆଲ୍‌ବମ୍ ଗୀତର ଆହୁରି ପ୍ରଚାର ପ୍ରସାର କଲା। ଏହା କିନ୍ତୁ ମାନିବାକୁ ହେବ ଯେ ଆଲ୍‌ବମ୍ ଗୀତକୁ ଲୋକପ୍ରିୟ କରାଇବା ପରେ ଏହାକୁ ଭିସିଡି ମାଧ୍ୟମରେ ଘରେ ଘରେ ପହଞ୍ଚାଇଥିଲା ସାର୍ଥକ। ୨୦୦୨ ମସିହାରେ ଝଙ୍କାରର ଭିସିଡି ବଜାରରେ ବିକ୍ରି ହେଲା ଓ ସୃଷ୍ଟିହେଲା ଭିସିଡି ବଜାର। ମନୋରଞ୍ଜନର ଏକ ନୂଆ ଦୁନିଆ। ଏହି ନୂଆ ଦୁନିଆ



ଯେତେ ଯେତେ ପୁରୁଣା ହେଲା ଅଶ୍ଳୀଳତାର ମହୁରା ସେତେ ସେତେ ଅଧିକ ଭର୍ତି ହେଲା। ଯେଉଁ ଆଲ୍‌ବମ୍ ଗୀତରେ ଦିନେ ବାଜୁଥିଲା ଭଜନ, ତାହା ଆଧୁନିକତାର ଛାପ ନେଇ 'ବଡ ଦେଉଳରେ ନାହିଁ ଲୋ ଜାତି ଅଜାତି, ରଙ୍ଗବତୀରେ' ପହଞ୍ଚିଲା। ଆଶ୍ଚର୍ଯ୍ୟ! ଏହି ଗୀତକୁ ବି କୁହାଗଲା ଭଜନ।

## ଭଜନରୁ ମାଇ ହାତୀ ଯାଏଁ

ଏଭଳି ଭଜନ କିନ୍ତୁ କିଛି ଲେଖକଙ୍କୁ ଯାହା ଇଚ୍ଛା ତାହା ଲେଖିବାକୁ ସାହାସ ଯୋଗାଇଲା। ସେଇ ଧାରାରେ 'ତୋର ତେରଛି ଚାହାଣି'ରୁ ଗୀତ ଆସି ପହଞ୍ଚିଲା ଓଡିଶାର ଜଙ୍ଗଲରେ ଯେତେ ମାଇ ହାତୀ, ଦିଲ ଦେଇଯା, ରହ ରହ ତୋ ବୋଉକୁ କହୁଚି' ଯାଏଁ। ଏହା ପରେ ପୁଣି ଆସିଛି 'ସାରେ! ମୋତେ ଦିଅ ପାହାରେ ଓ କାଉ, ତୋ ବୋଉକୁ ନଉ ଭଳି ନିହାତି ଅଶ୍ରାବ୍ୟ ଗୀତ। ଗୀତ ରଚନାର ଧାରା ଯେତେ କଦର୍ଯ୍ୟ ହେଉଛି ଗୀତକୁ ଦୃଶ୍ୟାୟିତ କରିବାର ଶୈଳୀ। 'ଝଙ୍କାର' ପରେ ପରେ ଆଲ୍‌ବମ୍ ଗୀତକୁ ମିନି ପର୍ଦାରେ ନେଇ ଆସିଲେ ସମ୍ରାଟର ସଙ୍ଗୀତ ଦୁନିଆ ମାଧ୍ୟମରେ ରଙ୍ଗାରଙ୍ଗ, ୱାର୍ଲଡ୍ ମ୍ୟୁଜିକ୍‌ର ତାକ୍ ଧିନାଧିନ୍, ଘୁଙ୍ଗୁର, ବାଦଶାହ୍‌ର ନବରଙ୍ଗ, ଟିପି ମ୍ୟୁଜିକ୍‌ର ଟିପିଟିପି ଛାୟାଗୀତ ଇତ୍ୟାଦି ସବୁ କାର୍ଯ୍ୟକ୍ରମ ଚାଲିଥିଲା ଦୂରଦର୍ଶନରେ। ଏହି ସବୁ କାର୍ଯ୍ୟକ୍ରମରେ ଏକରକମ ଲଗାମ୍ ରହିଥିଲା। ଅଶ୍ଳୀଳତାର ଝଲକ୍ ଆସିବା ମାତ୍ରେ ବା ଅଭିଯୋଗ ହେଲେ ହିଁ ଦୂରଦର୍ଶନ ସେ ଗୀତକୁ ବ୍ୟାନ୍ କରୁଥିଲା।




ଅବଶ୍ୟ ଦୂରଦର୍ଶନର ରହିଛି ଏକ କମିଟି। ଏହି କମିଟିର ସ୍ୱୀକୃତି ପରେ ହିଁ ମିନି ପରଦାରେ ଆଲ୍‌ବମ୍ ଗୀତ ଆସେ। କିନ୍ତୁ ଘରୋଇ ଚ୍ୟାନେଲ୍ ଇ-ଟିଭି, ଓ-ଟିଭିର ଇନ୍‌ହାଉସ୍ ଓ ପ୍ରଯୋଜିତ କାର୍ଯ୍ୟକ୍ରମରେ ଆଲ୍‌ବମ୍ ଗୀତ ଯେବେଠୁ ବାଜିଲା, ସେବେଠୁ ଶ୍ଳୀଳ ଏବଂ ଅଶ୍ଳୀଳ ଗୀତର ଲକ୍ଷ୍ମଣରେଖା କୁଆଡେ ମିଳାଇଗଲା। ସିଧାସଳଖ ଦ୍ୱିଅର୍ଥବୋଧ ଶବ୍ଦ ଭର୍ତ୍ତି ହେଲା ଗୀତରେ। ଗୋଟିଏ ଘରୋଇ ଚ୍ୟାନେଲ୍ ତ ଆଲ୍‌ବମ୍ କାର୍ଯ୍ୟକ୍ରମ ପ୍ରସାରଣ କରିବା ଆଗରୁ ସିଧା ବୈଧାନିକ ସତର୍କତା





ଦେଉଛି, 'ଏହି କାର୍ଯ୍ୟକ୍ରମର ପ୍ରସାରଣ ପାଇଁ ସେ ଦାୟୀ ନୁହେଁ।' ଅଶ୍ଳୀଳତା ଓ ରୁଚିହୀନତାର ଆଲ୍‌ବମ୍ ସଂଗୀତର ଜୁଆରରେ ଆମେ ରଚିଗଲୁ ଏଇଠୁ।

**ଅଧୁନା ଓଡିଆ ଆଲ୍‌ବମ୍‌ରେ ପ୍ରସାରିତ କୋଡିଏଟି ସବୁଠାରୁ ଅଶ୍ଳୀଳ ଗୀତ ।**

*୧ ବୋଉଲୋ ପଇସା ଦେ ମୁଁ ପ୍ରେମ କରିବି*
*୨ ଠେକୁଆ କହୁଛି ହାତୀକୁ, ଫାଙ୍କା ଅଛ ରାତିକୁ*
*୩ ସେଦିନ ଚାନ୍ଦିନୀ ରାତିରେ ହାତ ମାରିଦେଲେ ଛାତିରେ*
*୪ ମାଡାମ୍ ! କଣ ଝଡିଗଲଣି*
*୫ ହାୟ ରାମା ! ମୋର ଛୋଟ ହେଲା ଜାମା*
*୬ ରାତି ହେଲେ ଛାତି ମୋର ଚବିଶ୍ ପଚିଶି*
*୭ ମୋ ବାଡି ଦାନ୍ତକାଠି, ତୋ ବାଡି ଗୁଡାଖୁ*
*୮ ଯେବେ ହଲେଇଦେଲୁ ମଞ୍ଜୁ*
*୯ ବୁଢୀ ବୟସେ ଝଲମଲ; ମଧୁବାଲା*
*୧୦ ବାଞ୍ଛୁ ତୋ ସାର୍ଟ ଭିତରେ କଣ?*
*୧୧ ମୋ ଡୁବିରେ ତୁ ହାତ ମାରେନା*
*୧୨ ଯେତେ ହଲାଉଛି ହଲା*
*୧୩ ଚଉଦରେ ଚକାଜହ୍ନ, ପନ୍ଦରରେ ଚୁଞ୍ଚିମୂନ*
*୧୪ ମୋ ଛାତିରେ ବୋମା ଫୁଟିଲା*
*୧୫ ଭାରି ଗରମ ଲାଗୁଛି*
*୧୬ ପାର୍ଟି ମୁଁ ଫୁଲ୍ ନେଲା ବାଲା*
*୧୭ ଧୀରେ ଧୀରେ ଗାଡି ଚଲା*
*୧୮ ଏତେ ଭେଣ୍ଡିଆଟେ ହେଲାଣି*
*୧୯ ଦେ ଦେ ଚୁମା ଦେ*
*୨୦ ଚୁଚୁମା ଛାଡିଦେ*

## ବାଜେ ସଂପର୍କର ସ୍ୱର

ଆମ ସଂସ୍କୃତି କହେ 'ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର'। ଅର୍ଥାତ୍ ଶିକ୍ଷକ ହେଉଛନ୍ତି ସାକ୍ଷାତ ଇଶ୍ୱର। ଅଥଚ ଆଜି ଆଲ୍‌ବମ୍ ଗୀତ କହୁଛି, 'ମାଇଲା ଲୋ, ଆଖିଠାର ମାଇଲାଲୋ ରସିକିଆ ହିନ୍ଦୀ ମାଷ୍ଟର।' ଏହାର ଉତ୍ତରରେ ମାଷ୍ଟର ବି କହେ 'ନବମ ଶ୍ରେଣୀ ଝିଅଟା ଛାତିକୁ ମୋ ହର୍ଟ କରୁଛି।' ଗୁରୁ-ଶିଷ୍ୟାର ପରଂପରା।



କେଉଁଠି ଆସି ପହଞ୍ଚିଗଲାଣି। ଛତୁ ଫୁଟିଲା ପରି ଆଲ୍‌ବମ୍ ହେଉଛି ଆଉ ପ୍ରାୟ ଆଲ୍‌ବମ୍‌ରେ ଏମିତିକା ସ୍ୱର। ଅଜା, ନାତୁଣୀକୁ ଦେଖି ଅଶ୍ଳୀଳ ଇଙ୍ଗିତ କଲାଣି ତ ଏଣେ ଛାତ୍ର ଶିକ୍ଷକଙ୍କ ଆଗରେ କହିଲାଣି, 'ମୋର ଇତିହାସ ଭଲ ହେଉଥିଲା।' ଆଉ ଛାତ୍ରୀକୁ ଦେଖି ତା'ର ସବୁ ଅଙ୍କ ଭୁଲ୍ ହୋଇଗଲା। ଏବେ ଏବେ ତ ବେଶୀ ବିପଦଜନକ ଧାରାଟିଏ ମାଡି ଆସିଛି ଓଡିଆ ଆଲ୍‌ବମ୍ ପ୍ରବାହକୁ। ତାହା






ହେଉଛି, ଶିକ୍ଷକ ଓ ଛାତ୍ରୀଙ୍କ ପ୍ରେମ କାହାଣୀ। ତାହାର ନମୁନା ଉପରେ ଦିଆଯାଇଛି। ଆହୁରି ଦେଖନ୍ତୁ ପୁଅଟିଏ ଝିଅକୁ କହୁଛି; 'କୁନିଲୋ କୁନିଲୋ ସତ କହୁଛି, ତୋ ଭଉଣୀକୁ ମୋ ଭାଇ ଫୋନ୍ କରୁଛି।' ଏହା ଫେରାଦି ନା ଅଶ୍ଳୀଳ ଇଙ୍ଗିତ? ଆପଣ ନିଜେ ଏଥିରୁ ବୁଝନ୍ତୁ। ଆମେ ଏ ସବୁ ଗୀତ ଶୁଣୁଛୁ ଆଉ ସହୁଛୁ ମଧ୍ୟ। ତୁଣ୍ଡ ବାନ୍ଧି ବି ରହୁଛୁ। ଗୀତ ସବୁର ସେନ୍‌ସର୍ ହେବ ବୋଲି ମଝିରେ ମଝିରେ ହାଙ୍କା ଉଠୁଛି। କିନ୍ତୁ, କଥା ତ ପବନ, ପବନ ପରି ମିଳାଇଯାଉଛି। ଦିନେ କେବେ କଲେଜ୍ ପଢୁଆ ଟୋକାଙ୍କ ପ୍ରେମ ନେଇ ରସମସ ଗୀତ ହେଉଥିଲା, ଭଲ ବି ହେଉଥିଲା। ଆଜିକାଲି ଏ ଫେସନ୍ ପୁରୁଣା ହୋଇଗଲାଣି ଯେମିତି। ସଂଗୀତକାର,







ଗୀତିକାର, ଗାୟକ, ଗାୟିକାଙ୍କ ରୁଚିବୋଧ ବଦଳିଗଲାଣି, ସେଥିପାଇଁ ତ ସେମାନେ ଆଖେଇଲେଣି ସ୍କୁଲ ପଢୁଆ ପୁଅଝିଅଙ୍କୁ, ସ୍କୁଲ୍ ମାଷ୍ଟ୍ର ମାଷ୍ଟ୍ରାଣୀଙ୍କୁ। ଏହି ବିକୃତ ମାନସିକତାକୁ ରୋକିବାକୁ କେହି ନାହିଁ, ଚିତ୍କାର କଲେ ବି କେହି ଶୁଣିବାକୁ ନାହାଁ।



ପ୍ରକାଶିତ: ରବିବାର ସମ୍ବାଦ, ୨ ଜୁଲାଇ, ୨୦୦୬
ଉପସ୍ଥାପନା: ସୂର୍ଯ୍ୟ ଦେଓ

# ସମୟ

ଧାରାବାହିକ କାହାଣୀ

ପୂର୍ବ ପ୍ରକାଶିତ ଉତ୍ତାରୁ

କବାଟ ଖୋଲି ବାବୁ ଏପାଖ ସେପାଖ ଦେଖିଲେ, କିନ୍ତୁ କେହି ନଥିଲେ, ମନକୁ ମନ ଭାବିଲେ ବୋଧହୁଏ ସେହି ସାହିର କିଛି ବାଳୁଙ୍ଗାପିଲା ଏଇ କର୍ମ କରିଥିବେ। ସେ କବାଟ ବନ୍ଦ କରିବାକୁ ଉଦ୍ୟତ ହେଉଥିବା ବେଳେ ତଳେ ଶୋଇଥିବା ନିଜ ପୁଅ ରବି ଉପରେ ପଡିଲା। ରବି ନିଶାସକ୍ତ ଥିଲା ଆଉ ଶରୀରରେ ଥିବା ବସ୍ତ୍ରସବୁ ଚିରି ଯାଇଥିଲା, ମୁଣ୍ଡରୁ ରକ୍ତ ବହୁଥିଲା। ସେ ତା'କୁ କାନ୍ଧରେ ପକାଇ ଘର ଭିତରକୁ ଆଣିଲେ। ଏହା ଦେଖି ରିନା ବୋଉର ରକ୍ତ ସ୍ଥିର ହୋଇଯାଇଥିଲା। ସେ କିଛି କହିପାରିଲାନି। ତା' ଗଳାରୁ କଥା ଖସୁନଥିଲା, ସେ ଠିଆ ହୋଇ ଥରଥର କଂପୁଥିଲା। ବାବୁ ହସିଲେ, କହିଲେ ଦେଖ, ''ପ୍ରେମ କରି ବାବୁ ସାର୍ଟିଫିକେଟ୍ ଆଣିଛନ୍ତି। ଚିରା ବସନ ଆଉ ରୁଧିର ଧାର, ଏହାଠୁ ଅଧିକ କଣ କିଏ ଦେଇଥା'ନ୍ତା।" କଥା କହୁକହୁ ବାବୁଙ୍କ ଆଖି କୋଣରୁ ଦୁଇଧାର ଅଶ୍ରୁ ବହିଯିବାର ଅଭିପ୍ରାୟରେ ଖସି ଆସୁଆସୁ ଅଟକିଗଲେ। ନିଜେ ସଫାକନା ଆଣି ସେ ପୁଅକୁ ଧୂଆଧୋଇ କରିଲେ, ମଲମ ଲଗେଇଲେ। ସକାଳର ସାତଟା ପର୍ଯ୍ୟନ୍ତ ବାବୁ ସେବାରେ ବସିଲେ, ତା'ପରେ ଉଠି ଚାଲିଗଲେ। ରିନା ବୋଉ ପୁଅ ପାଖରେ ବସି ତା' ମୁଣ୍ଡକୁ ଅଣ୍ଡାଳି ଦେଉଥିଲା।



ଆହ୍ୱାନ୍

ଦିପହର ବେଳକୁ ରବିକୁ ହୋସ୍ ଆସିଲା। ସେ ଘରେ ଥିଲା, ବୋଉକୁ ମୁଣ୍ଡଟେକି ଚାହିଁଲା, ଆଖିରୁ ଦୁଇଧାର ଲୁହ ବହିଆସିଲା। ସେ କାନ୍ଦୁ କାନ୍ଦୁ କହିଲା, "ବୋଉ ସେମାନେ ମୋତେ ଠକି ଦେଲେ।" ରିନା ବୋଉ କିଛି କହିଲାନି। ଉଠି ଗଲା ରୋଷେଇ ଘରୁ ଗରମ ଚା' କପ୍‌ଟିଏ ଧରି ଆସି ଦେଲା। କହିଲା, "ଆମେ ହେଲେ ବାପ ଗରିବ। ଦି ଦିନ ଭଲକରି ମୁଠେ ଖାଇଦେଲେ ଆମେ ଧନୀ ହେବାନି। ଯିଏ ଜନ୍ମରୁ ଧନୀ ସେ ହିଁ ଜାଣିଛି ତାହା କଣ? ଯୁଗଟେ ଲାଗିଲା, ତୋ ବାପାଙ୍କୁ ଏଇ ଘର ଖଣ୍ଡିକ କରିବାପାଇଁ। ଦିନେ ବି ସେ ମାଛ ମାଂସର ଲାଳସା କରିନାହାନ୍ତି। କରିଥିଲେ ଆମେ ଏଇଠି ନଥାନ୍ତେ। ଆମେ ବାବୁ ଅଳ୍ପରେ ସନ୍ତୁଷ୍ଟ ହେବା ଲୋକ। ଛାଡ, ସମସ୍ତେ ସ୍ୱପ୍ନ ଦେଖନ୍ତି, ତୁ ବି ଦେଖୁଥିଲୁ, ହେଲେ ହେଲା କଣ? ସେଇ ଝିଅ ଯାହାପାଇଁ ତୁ ଏ ଘର ବିକିଦେବାକୁ ବାହାରି ଥିଲୁ ସେ ନିଜେ ତୋତେ ଛାଡି ଚାଲିଗଲା।" ରିନା ବୋଉ ଉଠି ଚାଲିଗଲା।



ଦିପହର ପରେ ବାବୁ ଘରକୁ ଆସିଲେ, ଖାଇବା ବେଳେ ପଚାରିଲେ, "ତୁମ କୁଳମଣି ଖାଇଲାଣି?" ରିନା ବୋଉ ମୁଣ୍ଡ ହଲାଇ ନାହିଁ କହିଲା। ବାବୁ ଖାଇବା ଥାନରୁ ଉଠିଗଲେ, ଯାଇ ପୁଅ ଆଗରେ ଠିଆ ହୋଇ କହିଲେ, "ଚାଲ, ଖାଇବୁ। ଯାହା ଶାନ୍ତି ତୋ ମା'କୁ ଦେଲୁ ଯଥେଷ୍ଟ ହେଇଛି, ଚାଲ୍।" ବାପପୁଅ ଦୁଇ ଜଣ ଏକାଠି ଖାଇବସିଲେ। ବାବୁ ବୋଧହୁଏ ଜୀବନରେ ପ୍ରଥମଥର ନିଜ ହାତରେ ପୁଅକୁ ଖୁଆଇଦେଲେ। ସଂଧ୍ୟାରେ ପୁଅର ସାଙ୍ଗମାନେ ଆସିଲେ। ରିନାବୋଉ ଚୁପଚାପ୍ ନିଜ କୋଠରୀକୁ ଚାଲିଗଲା। ସାଙ୍ଗମାନେ ଖବର ଦେଲେ, ସେ ଚାଲିଗଲା। ତା' ବାପା ମା' ତା'କୁ ବିଦେଶ ପଠାଇଦେଲେ। ରବି ନିରବରେ ଅଶ୍ରୁ ଝରାଇ ବସିଥିଲା। ଦୁଇ ଦିନ ପରେ ପୁଣି ବାପ ଦୋକାନ ଖୋଲିବା ପାଇଁ ଚାଲିଗଲା।





ଏବେ ରବି ନିୟମିତ ଦୋକାନକୁ ଯାଉଥିଲା, ଆସୁଥିଲା। ଠିକ୍ ସମୟରେ ଖାଉଥିଲା, କିନ୍ତୁ ଆଗ ଭଳି ବେଶୀ କଥାବାର୍ତ୍ତା ହେଉ ନଥିଲା। ଥରେ ରିନାବୋଉ ତା' ବାହାଘର କଥା ଉଠାଇବାରୁ ସେ କିଛି ନକହି ଚାଲିଗଲା। ରବିର ନିରବତା ଆଗରେ ରିନା ବୋଉ ହାରିଯାଉଥିଲା। ସେ ଭାବୁଥିଲା, ତା' ପୁଅର ଏଇ ଅବସ୍ଥା ପାଇଁ କିଛିକାଂଶରେ ସେ ହିଁ ଦାୟୀ। କିନ୍ତୁ ବିଧାତା ହାତରେ ସମସ୍ତଙ୍କ ଡୋରୀ ସେ ଯାହା ଚାହିଁବ ସେୟା ହିଁ ହେବ। ରବି ପାଇଁ ସେ ଏତେ ଚିନ୍ତିତ ଥିଲା ବେଳେ ବାବୁ ପୁଣି ପୁର୍ବବତ ନିଜ ମଣ୍ଡଳିରେ ବ୍ୟସ୍ତ ହୋଇଗଲେ। ରିନା ଦୁଇ ଦୁଇ ଥର ଖବର ଦେଲା, ଭାଇ କୁ ତା' ଘରକୁ ପଠାଇବା ପାଇଁ, ହେଲେ ରବି ଗଲାନି। ରିନା ବୋଉ ବି ଚାହୁଁଥିଲା ସେ ରିନାର ନଣନ୍ଦ ଗୀତାକୁ ଦେଖୁ ଯଦି କଥାପଡେ ସେ ବି ରାଜି ହୋଇଯିବ। ଭଲ ଝିଅଟି। ଘରର ସବୁ କାମରେ ଧୁରନ୍ଧର। କିନ୍ତୁ ରବି ନିରବ।

ମାସ କେଇଟା ବିତିଗଲା, ବାବୁଙ୍କ ଅନୁପସ୍ଥିତି ଏବେ ବେଶୀ କଷ୍ଟକର ହେଉନଥିଲା। ପୁଅର ପରିଶ୍ରମ ଫଳରେ ଘରେ ଟିଭିଟିଏ ଆସିଯାଇଥିଲା। ଏବେ ବାବୁ ବି ସଂଧ୍ୟାରେ ଘରେ ହିଁ ରହୁଥିଲେ। ଧାରାବାହିକ କାହାଣୀ, ସମ୍ବାଦ ଇତ୍ୟାଦିରେ ମସଗୁଲ୍ ହୋଇଯାଉଥିଲେ। ଏବେ ସେ ବେଳେ ବେଳେ ରିନା ବୋଉ ସହ କଥା ପଦେ ଦୁଇପଦ ବି ହେଉଥିଲେ। ଟିଭି ଦେଖୁ ଦେଖୁ କହିବେ, "ଛି, ଏଇ ପାକିସ୍ତାନୀ ଗୁଡାକ ଯଦି ଅକାଳରେ ମରନ୍ତି ମୁଁ ଶ୍ରୀ ମନ୍ଦିରରେ ଯାଇ ନଡିଆ ଭାଙ୍ଗନ୍ତି।" ପୁଣି କହିବେ, "ବୁଝିଲ ରିନା ବୋଉ, ତୁମେ ବି ଟିଭି ଦେଖ ଆଉ ଶିଖ କେତେ ପ୍ରକାରର ବଡ଼ିଆ ବଡ଼ିଆ ବ୍ୟଞ୍ଜନ ସବୁ ତିଆରୁଛନ୍ତି ଏଇ ସ୍ତ୍ରୀଲୋକମାନେ।" ବାବୁ କେବେ ଖାଦ୍ୟପାଇଁ ଏତେ କଥା କହିବା ସେ ଜୀବନରେ ଦେଖିନି, ତଥାପି ଖୁଶି ଲାଗୁଥିଲା, ମନେ ମନେ କହୁଥିଲା, "ଯାହା ହେଉ ଜୀବନ ସାରା ପଦେଅଧେ କଥା ନହେଲେ କଣହେଲା, ପୁଅର ଏଇ ଟିଭି ଯୋଗୁଁ ଅନ୍ତତଃ ଏଇ ବୁଡାବୁଡି ବୟସରେ ଦୁଇ ପଦ କଥାତ ହେଉଛନ୍ତି।"

ଦିନ ମାସ ବିତି ଯାଉଥିଲା। ରିନା ବୋଉ ଅଧିକରୁ ଅଧିକ ବୁଡ଼ି ହୋଇଯାଇଥିଲା, ବାବୁ ଆଜିକାଲି ଆଉ ଆସରକୁ ଯାଆନ୍ତି ନାହିଁ, ଦିନ ସାରା ଟିଭି ଆଗରେ ବସି ଦେଖନ୍ତି। ରିନାବୋଉର ଏକାନ୍ତ ଆଜିକାଲି ତା'ଠାରୁ କେତେ ଯେ ଦୁର ପଳାଇଯାଇଥିଲା ସେ କହିପାରିବନି। ବୁଡାବୁଡ଼ି ଦୁଇପ୍ରାଣୀ ଘରେ ରହୁଥିଲେ। ପୁଅ ଦିପହରକୁ ଆସେ ଆଉ ମୁଠେ ଖାଇଦେଇ ପଳାଇଯାଏ, ଯେ ପୁଣି ରାତି ଅଧରେ ଆସେ। ବେପାର ଭଲ ହେଉଥିଲା ବୋଲି ବାବୁ କହିଲେ। ରିନା ବୋଉ ର ମନରେ ତଥାପି ଅନେକ ଚିନ୍ତା। ଦିନକୁ ଦିନ ସେ ଦୁର୍ବଳ ହୋଇ ଯାଉଥିଲା। ଅଣ୍ଟା ସଳଖି ଠିଆ ହେବାବି ସମ୍ଭବ ହେଉନଥିଲା। ଏଣେ ଦିନସାରା ବାବୁଙ୍କ ଚର୍ଚ୍ଚା କରି କରି ସେ ପୁରା ଥକି ପଡୁଥିଲା। ଆଉ ପାରୁନଥିଲା ସେ।

ଦିନେ ସାହସ କରି ଦିପହରରେ ବାପପୁଅ ଖାଇ ବସିଥିବା ବେଳେ ସେ କହିଲା, "ମୋ ଦେଇ ଆଉ ହେବନି। ବୟସ ଯାଇ ତିନିକୋଡି ପାଖେଇଲାଣି ଆଉ କେତେ ଖଟିବି। ମୋତେ ଦୟାକର। ବାହା ହେଇ ଏଇ ଘରକୁ ଆସିଲା ପରଠୁ ଦିନଟିଏ ବି ଶାନ୍ତିରେ ବସିନି। ପୁଅ ଝିଅ ବାପା ସମସ୍ତଙ୍କ ସବୁ ଭଲମନ୍ଦ ବୁଝୁ ବୁଝୁ ମୁଁ କେତେବେଳେ ବୁଡି ହୋଇଗଲି ଜାଣିନି। ଏବେ ତୁମେ ବାପା ପୁଅ ନିଜପାଇଁ ଚାକରାଣୀ ଟେ ଯୋଗାଡ କର। ମୁଁ ଆଉ ପାରିବିନି।"

ବାବୁ ଚୁପ୍‌ଚାପ୍ ଚାଲିଯାଉଥିଲେ, କହିଲେ, "ତୁମ ପୁଅକୁ ପଚାର ଯଦି ସେ ରାଜି ହେବ ବୋଇଲେ ଘରକୁ ବୋହୁଟିଏ ଆଣିବା। ନ'ହେଲେ ଚାକରାଣୀ ହାତରନ୍ଧା ଖାଇ ଖାଇ ଆମେ ଦୁଇ ବୁଡାବୁଡି ଶ୍ମସାନକୁ ଚାଲିଯିବା। ସେଦିନ ରବି ପ୍ରତିବାଦ କରିନଥିଲା। ବାବୁ ସଂଧ୍ୟାରେ ରଘୁପଣ୍ଡିତଙ୍କୁ ଡକାଇ ଝିଅଟିଏ ଦେଖିବାକୁ କହିଲେ। ବହୁତ ଝିଅ ଦେଖିବାକୁ ଦରକାର ପଡିଲାନି। ପୁଅ ଯାଇ ଝିଅଦେଖିବାପାଇଁ ରାଜି ହେଉନଥିଲା। କିନ୍ତୁ ବାବୁ ଜିଦ୍ କରିବାରୁ ଦିନେ ସଂଧ୍ୟାରେ କାର୍ ଆଣି ପୁଅ ବାପାମା'ଙ୍କୁ ଧରି ଯାଇ ଝିଅ ଦେଖି





ଆସିଲା । ଆଉ ଚତୁର୍ମାସ୍ୟା ପରବର୍ତ୍ତୀ ପ୍ରଥମ ତିଥିରେ ହିଁ ବାହା ଘର ଟି ହୋଇଗଲା । କଣ୍ଢେଇ ପରି କନ୍ୟାଟିଏ ଆଣିଥିଲେ ବୁଢାବୁଢୀ । ବାହା ଦୁଇଦିନ ପରେ ବୋହୁ ରୋଷେଇ ଘରେ ପସିଲା । ରିନା ବୋଉ ମନା କରିବା ସତ୍ତ୍ୱେ ସେ କାହାକୁ କିଛି କୁହାଇ କି କରାଇ ଦେଲାନି । ଦିପହରକୁ ବାବୁପୁଅ ଖାଇବାକୁ ବସିଲା ବେଳକୁ ବୋହୁପିଲା ସମସ୍ତଙ୍କ ପାଇଁ ଖାଇବା ପରୋଶିଦେଲା । ରିନା ବୋଉର ମନରେ ଯେତେ ପ୍ରଶ୍ନଥିଲା ତା, ଅଧାରୁ ଅଧିକ ଉଭେଇ ଯାଇଥିଲା । ବୋହୁ ବଢିଆ ଖାଦ୍ୟ ରୋଷେଇ କରିଥିଲା । ହସି ହସି ବାବୁ କହିଲେ, "ବୁଝିଲୁ ମା' ତୋ ଶାଶୁକୁ କେତେ କହିଲି ଟିଭି ଦେଖ, ରୋଷେଇ ଟିକେ ଶିଖ, ହେଲେ ସେ କଣ ଶିଖିବ । ତୁ ଭାରି ଭଲ ରାନ୍ଧୁଛୁ ଯେ, ଟିଭିରୁ ଶିଖିଛୁ ନା?" ବୋହୁ କାନିତଳୁ ହସିଦେଇ କହିଲା, "ବାପା, ଆପଣ ଠିକ କହିଛନ୍ତି । ମୁଁ ଘରେ ଟିଭିରୁ ଦେଖି ଦେଖି ସବୁ ଶିଖିଛି । ବୋଉ କୁ କେବେବି ରୋଷେଇ ରେ ପୂରେଇ ଦେଉନଥିଲି, ଏଇ ସବୁ ଜିନିଷ ଶିଖିବି ବୋଲି ।" ସେଦିନ ବାବୁ ଭାରି ତୃପ୍ତିରେ ଖାଇଲେ ।

କୁନି ଆସିଲା ପରେ ରିନା ବୋଉର ପାଦ ତଳେ ଲାଗିଲାନି । ବୋହୁ ସୁନ୍ଦର ଯେତେ ଗୁଣର ସେତେ । ଶାସନ ବ୍ରାହ୍ମଣ ଘର ଝିଅ ସେ । ଧିରେ ଧିରେ ରବି ଘରେ ଅଧିକ ସମୟ ରହିଲା । ବାହାଘରେ କିଛି ଯୌତୁକ ମାଗିନଥିଲେ ସୁଦ୍ଧା ଝିଅଘର ତରଫରୁ ଗୋଟିଏ ଗାଡି ଦେଇଥିଲେ, ସେଥିରେ ବସାଇ ବୋହୁକୁ ବଜାର ସହର ସବୁ ବୁଲାଇ ଆଣେ । ବୋହୁ ଆଉ ଘରର ବୋହୁ ହୋଇ ନଥିଲା । ପୁରା ଏଇ ଘର ର ଝିଅ ହୋଇଯାଇଥିଲା । ରିନାବୋଉ କୁନିକୁ ଝିଅଠୁ ବଳି ପାଳିଆସିଲେ । ତା' ମୁଣ୍ଡରେ ତେଲ ଲଗାଇଦେବାଠୁ ଆରମ୍ଭ କରି ତା' ପାଇଁ ଖଟା ଆଚାର ସବୁ ତିଆରି କରିଦେବା ଇତ୍ୟାଦି । ବୋହୁ ଆସିଲାପରେ ରିନା ବୋଉ ପ୍ରଥମଥର ଏକା ଏକା ବଜାର କରିବାକୁ ଗଲା । ଶାଶୁବୋହୁ ଏକାଠି ସଉଦା କରି ଆସିଲେ । ସଂଧ୍ୟାରେ ବୈଠକରେ ବାବୁ କହିଲେ, "ବୋହୁ କଣ ଆସିଲା, ବୁଢ଼ୀ ଶାଶୁଟା ପୁରା ପିଲା ହୋଇଗଲା ।" ସମସ୍ତେ ହସି ଉଠିଲେ ।

ରୋଷେଇ ଘରେ କାମ କରୁକରୁ କୁନି ପଡିଗଲା, ତା'କୁ ଟେକି ନେଇ ଶୋଇବା ଘର ଖଟରେ ଶୁଆଇଦେଇ ରିନାବୋଉ ମୁଣ୍ଡ ଅଣ୍ଡାଳି ଦେଇ କହିଲେ, "ମା' କଣ ହେଲା?"

କୁନି କହିଲା, "ବୋଉ, କଣ ହେଲା ମୁଁ ଜାଣିନି, ହଠାତ୍ ମୁଣ୍ଡଟା ଘୁରେଇ ଦେଲା, ଆଖି ଆଗରେ ଅନ୍ଧାର ଦେଖାଗଲା, ମୁଁ କାନ୍ଥକୁ ଧରିବାକୁ ଚେଷ୍ଟା କଲି ହେଲେ ପଡିଗଲି ।" ବାବୁ କହିଲେ ଡାକ୍ତରଙ୍କୁ ଡାକିବା, ହେଲେ ରିନାବୋଉ ମନା କରି କହିଲା, "ତୁମେ ଜାଣିବ କେମିତି? ପୁରୁଷ ଲୋକ ଯେତେହେଲେ । ତୁମେ ଜେଜେ ହେବାକୁ ଯାଉଛ ଆଉ ମୁଁ ଜେଜେ ମା' । ଜାଣିନ ଗର୍ଭରହିଲେ ଏମିତି କେତେ ମୁହଁ ବୁଲାଏ କେତେ ବାନ୍ତି ହୁଏ ।" ବାବୂ ଆଉ ଚୁପ୍ ରହିପାରିଲେନି । ଦୌଡିଯାଇ ସାହି ପାଖରେ ଥିବା ମିଠା ଦୋକାନରୁ କିଲେ ମିଠା କିଣି ଦୌଡିଗଲେ, ପୁଅର ଦୋକାନକୁ ।



ବାପାଙ୍କୁ ଦେଖି ରବି କିଛି ଭାବିବା କିମ୍ବା କହିବା ପୂର୍ବରୁ ସେ ତା' ପାଟିରେ ମିଠାଟିଏ ଭରତିଦେଇ କହିଲେ, ତୁ ବାପା ହେବାକୁ ଯାଉଛୁ, ଆଉ ମୁଁ ଜେଜେ ।" ରବି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା । ବାବୁ ମିଠା ବାଣ୍ଟୁଥିଲେ । ସେ ବୁଝି ପାରୁନଥିଲା ଏହା କେମିତି ହେଲା ।

ଅବଶିଷ୍ଟାଂଶ ଆଗାମୀ ସଂସ୍କରଣରେ



ଆଗାମୀ ସଂସ୍କରଣରେ ଆମ ରୋଷେଇ ନାମରେ ଏକ ସ୍ୱତନ୍ତ୍ର ବିଭାଗ ଛାପିବାର ପ୍ରସ୍ତାବ ରହିଛି, ଯଦି କେହି ବନ୍ଧୁ ଏହି ବିଭାଗର ଦାୟିତ୍ୱ ନେବା ପାଇଁ ଇଚ୍ଛୁକ ସେ ମୋ ସହ ଯୋଗାଯୋଗ କରି ପାରନ୍ତି । ଏଥି ପାଇଁ ପ୍ରତି ମାସରେ ସେ ଗୋଟିଏ କିମ୍ବା ଦୁଇଟି ଖାଣ୍ଟି ଓଡିଆ ବ୍ୟଞ୍ଜନ ତିଆରି କରିବା ପ୍ରଣାଳୀ ଲେଖି ପଠାଇ ପାରନ୍ତି କିମ୍ବା ଆମ ଏହି ପତ୍ରିକା ମାଧ୍ୟମରେ ଅନ୍ୟ ମାନଙ୍କଠାରୁ ଲେଖା ଆମନ୍ତ୍ରଣ କରି ପାରିବେ ।

ସଂପାଦକୀୟର ଅବଶିଷ୍ଟାଂଶ......

ତତ୍ପରତା ଦେଖାଦେଇଥିଲା । ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେଲେ ଓଡିଶାରେ ଜଳାଭାବ ଦେଖାଯିବାର ସମ୍ଭାବନା ରହିଛି ତଥା ଗଞ୍ଜାମ ଓ ଗଜପତି ଜିଲ୍ଲା ସମେତ ଦକ୍ଷିଣ ଓଡିଶାର ଅନେକ ଜିଲ୍ଲାରେ ମରୁଡି ପରିସ୍ଥିତି ସୃଷ୍ଟି ହେବାର ସମ୍ଭାବନା ରହିଛି । ଓଡିଶା ସରକାରଙ୍କ ତତ୍ପରତା ଅଭାବଯୋଗୁଁ ଆନ୍ଧ୍ର ପ୍ରଦେଶ ସରକାର ଏହି ପ୍ରକଳ୍ପ ଉପରେ କାର୍ଯ୍ୟାରମ୍ଭ କରିବା ସମ୍ଭବ ହୋଇଥିବା କଥା ଗଣମାଧ୍ୟମ ମାନଙ୍କରେ ପ୍ରଚାର ହୋଇଥିଲା ।

ସଦ୍ୟ ପ୍ରାପ୍ତ ଖବର ଅନୁଯାୟୀ, ବିଶ୍ୱର ଅନ୍ୟତମ ଧନପତୀ ଶ୍ରୀ ଲକ୍ଷ୍ମୀ ମିତ୍ତଲଙ୍କ ମିତ୍ତଲ ଷ୍ଟିଲ୍ ଇଣ୍ଡଷ୍ଟ୍ରିସ୍ ଓଡିଶାରେ ଏହାର ନୂତନ କାର୍ଯ୍ୟ ଆରମ୍ଭ କରିବା ସୁଯୋଗର ଅପେକ୍ଷାରେ ଅଛି । କୁହା ଯାଇଛି ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେଲେ ଓଡିଶାରେ ଥିବା ବେକାରୀ ସମସ୍ୟା ଆଉ ରହିବ ନାହିଁ । ଜୁଲାଇ ୩୦ ତାରିଖରେ ଶ୍ରୀ ଲକ୍ଷ୍ମୀ ମିତ୍ତଲ ସ୍ୱୟଂ ଓଡିଶା ଗସ୍ତରେ ଆସୁଥିବା ଖବର ପ୍ରସାରିତ ହେବା ପରେ ଅନେକେ ଏହାକୁ ଆମ ରାଜ୍ୟ ପାଇଁ ଶୁଭଖବର ବୋଲି ବିବେଚନା କରୁଛନ୍ତି । ଏହି ସବୁ ଉନ୍ନତି ମୂଳକ କାର୍ଯ୍ୟ ଦ୍ୱାରା ଓଡିଶାର ଅର୍ଥନୈତିକ ଉନ୍ନତି ସମ୍ଭବ ହେବ.

**ସଂପାଦକ**



# ଏକ ବିଶେଷ ଅନୁରୋଧ

ଏହି ସଂସ୍କରଣର ପ୍ରକାଶନ ବେଳକୁ ମୁଁ ବହୁତ ବ୍ୟସ୍ତ ରହିଛି, ମୋର ଘର ସ୍ଥାନାନ୍ତରଣ ଯୋଗୁଁ ଅନେକ ବନ୍ଧୁ ପଠାଇଥିବା ଲେଖା ସବୁ ଏଣେତେଣେ ହୋଇଯାଇଛି, ସେଇଥିପାଇଁ ମୁଁ ଚେଷ୍ଟା କରୁଛି ଯେ ଏହି ସଂଖ୍ୟାରେ ସମସ୍ତ ପ୍ରକାରର ଲେଖା ପ୍ରକାଶ କରିବି । ବର୍ତ୍ତମାନ ଆଉ ଏକ ନୂତନ ପ୍ରକଳ୍ପର ପ୍ରୋତ୍ସାହନ କରୁଥିବା ଯୋଗୁଁ ମୁଁ ସେଇଥିପାଇଁ ବି ବ୍ୟସ୍ତ ରହିଛି । ଏଇଥି ପାଇଁ ଆଗାମୀ ସଂଖ୍ୟାରୁ ମୁଁ ଏହି ପତ୍ରିକାର ପ୍ରକାଶନ ଭାର ସମ୍ଭବତଃ ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ନ୍ୟସ୍ତ କରିବି ବୋଲି ଚିନ୍ତା କରିଛି, ଯଦି କେହି ବନ୍ଧୁ ଏହି ପତ୍ରିକାକୁ ସମୃଦ୍ଧ କରିବାକୁ ଚାହାନ୍ତି, ଏବଂ ଏହାର ସହ ସଂପାଦକ ଭାବରେ କାର୍ଯ୍ୟ କରିବାକୁ ଚାହାନ୍ତି ତା'ହେଲେ ମୋ ସହ ଯୋଗାଯୋଗ କରିପାରିବେ ।

ଜଗତ ସୃଷ୍ଟିକର୍ତ୍ତା ଶ୍ରୀ ଜଗନ୍ନାଥଙ୍କ ପବିତ୍ର ରଥଯାତ୍ରା ସମୟରେ ଓଡିଶାରେ ଜନଜୀବନକୁ ସମୃଦ୍ଧ କରିବା ତଥା ସମସ୍ତଙ୍କ ମନରେ ଜାତୀୟତାଭାବ ଉଦ୍ରେକ କରାଇବାର ଶପଥକୁ ସମସ୍ତଙ୍କ ମନରେ ଆଣିଦେଉଛି । ଆସ ଆମେ ହିଁ ଆରମ୍ଭ କରିବା ଆଉ ସମସ୍ତଙ୍କୁ ଏକ ଜାତି ଏକ ପ୍ରାଣ ମନ୍ତ୍ରରେ ବାନ୍ଧିବା । ଚଳିତମାସର ପତ୍ରିକା ପାଇଁ ଗୁଗୁଲ୍ ଗ୍ରୁପ୍ ମାଧ୍ୟମରେ ନିବେଦନ କରିବା ପରେ ବି କେହି ବନ୍ଧୁ ଏହା ପାଇଁ ଲେଖା ପଠାଇଲେ ନାହିଁ । ଅନ୍ତତଃ ଏହି ପତ୍ରିକା ପଢୁଥିବା ସମସ୍ତ ବନ୍ଧୁଙ୍କୁ ମୁଁ ନିବେଦନ କରିବାକୁ ଚାହେଁ ଯେ ସେମାନେ ସମସ୍ତେ ଗୁଗୁଲ୍ ଗ୍ରୁପ୍‌ର ସଦସ୍ୟ ହୁଅନ୍ତୁ, ଏଥିପାଇଁ ଆପଣଙ୍କୁ କୌଣସି ପ୍ରକାରର ଦେୟ ଦେବାକୁ ହୁଏନି । ଆପଣ ଆମ ୱେବ୍‌ସାଇଟ୍‌ର ତଳେ ଦିଆଯାଇଥିବା ବିଜ୍ଞାପନ ଉପରେ ନିଜ ଇ-ମେଲ୍ ଠିକଣା ଲେଖି ଆମର ସଦସ୍ୟ ହୋଇପାରିବେ, ଯାହା ଦ୍ୱାରା ଭବିଷ୍ୟତରେ ହେବାକୁ ଥିବା ସମସ୍ତ ଉନ୍ନତି ତଥା ପରିବର୍ତ୍ତନ ସବୁକୁ ଆପଣମାନଙ୍କୁ ଇ-ମେଲ ମାଧ୍ୟମରେ ଜଣାଇ ଦିଆଯିବ ।



ଏହି ସଂଖ୍ୟାରେ ପ୍ରକାଶିତ ଅନେକ ପ୍ରବନ୍ଧ ଓ କବିତା ଆପଣମାନଙ୍କୁ ନିଶ୍ଚିତ ଭାବରେ ଭଲ ଲାଗିବ ବୋଲି ଆଶା । ଏହି ସଂସ୍କରଣରେ ଏକ ବିଶେଷ ଆଲୋଚନାରେ ଆମେ ଉଲ୍ଲେଖ କରିଛୁ ଓଡିଆ ଗୀତର ଆଲ୍‌ବମ୍ ସଂସ୍କୃତି ଓ ଏଥିରେ ଅଶ୍ଳୀଳତାର ମାତ୍ରାଧିକ ପ୍ରୟୋଗ । ସମସ୍ତେ ଊଣାଧିକ ଏଥିରେ ସମ୍ମତି ହେବେ ଯେ ସଂପ୍ରତି ଓଡିଆ ଆଲ୍‌ବମ୍ ବଜାରରେ ମିଳୁଥିବା ଅଧିକାଂଶ ଗୀତ ଆମେ ନିଜ ପରିବାରରେ ବସି ସମସ୍ତଙ୍କ ସହ ମିଶି ଦେଖି ପାରିବାନି । ଏମିତି ସମୟରେ ଓଡିଶାର ଅଧିକାଂଶ ସହରରେ କେବୁଲ୍ ଟିଭି ମାଧ୍ୟମରେ ଦିନସାରା ଏହି ସବୁ ଆଲ୍‌ବମ୍ ଗୀତର ସଂପ୍ରସାରଣ ଦ୍ୱାରା କୋମଳମତି ବାଳକ ବାଳିକା ମାନଙ୍କ ମାନସିକତାକୁ ମନ୍ଥନ କରୁଥିବା ପରିଲକ୍ଷିତ ହେଉଛି । ଆଜିକାଲି ପିଲା ମାନେ ରାସ୍ତାରେ ଘାଟରେ ଶୁଣୁଥିବା ଏହି ଗୀତ ସବୁକୁ ନିଜ ତୁଣ୍ଡରେ ଧରି ଅନ୍ୟମାନଙ୍କ ଆଗରେ ଗାଇବାର ଦେଖାଯାଉଛି । ବିବାହ ସମୟରେ ବ୍ୟାଣ୍ଡପାର୍ଟି ମାନେ ବି ଏହି ସବୁ ଦ୍ୱିଅର୍ଥବୋଧକ ସଂଗୀତ ସବୁ ପରିବେଷଣ କରି ବରଯାତ୍ରୀରେ ଯାଉଥିବା ମହିଳା ମାନଙ୍କ ପାଇଁ ଅସହଜ ପରିସ୍ଥିତି ସୃଷ୍ଟି କରିଦିଅନ୍ତି ।

ସବୁଥର ପରି ଏହି ଥର ବି ଆମର ଧାରାବାହିକ କାହାଣୀ ସମୟର ଏହି ଥରର କାହାଣୀ ପ୍ରକାଶିତ ହୋଇଛି । ଏହା ସହିତ ସବୁଥର ପରି ରହିଛି ଓଡିଶା ପରିକ୍ରମା ପ୍ରଶ୍ନୋତ୍ତରୀ । ଗତ ସଂଖ୍ୟାରେ ପ୍ରକାଶିତ ପ୍ରଶ୍ନମାନଙ୍କ ଉତ୍ତର ଆଗାମୀ ସଂଖ୍ୟାରେ ପ୍ରକାଶିତ ହେବ । ଆମେ ସବୁଥର ପରି ଏହି ଥର ମଧ୍ୟ ଅନୁରୋଧ କରୁଛୁ ଯେ ଯେଉଁ ବନ୍ଧୁମାନେ ଆମ ଗୁଗୁଲ୍ ଗ୍ରୁପ୍‌ର ସଦସ୍ୟ ହୋଇନାହାନ୍ତି, ସେମାନେ ଆହ୍ୱାନ ୱେବ୍‌ସାଇଟ୍ ତଳେ ଦିଆଯାଇଥିବା ବିଜ୍ଞାପନ ଉପରେ ନିଜ ଇ-ମେଲ୍ ଦେଇ ସଦସ୍ୟ ହୁଅନ୍ତୁ ।

# ସୁରଙ୍ଗୀ ରାଜଗଡ

ଭଗ୍ନ ସ୍ତୁପ ତଳେ ସୂରଙ୍ଗୀର ରାଜଗଡ। ଦିନଥିଲା ଏହି ବିଶାଳ ପ୍ରାସଦ ରହୁଥିଲା ଦିବାରାତ୍ର ଜନରବରେ ଆନ୍ଦୋଳିତ। ଓଡିଶାର ସ୍ୱାଧିନତା ହେଉ ଅବା ଓଡିଆ ଭାଷା ଆନ୍ଦୋଳନ ହେଉ, ପ୍ରତ୍ୟେକ ପାଦରେ ଇତିହାସରେ ସୁନେଲି ଅକ୍ଷରରେ ନାମାଙ୍କିତ ସୂରଙ୍ଗୀ ରାଜବଂଶ ବର୍ତ୍ତମାନ ଅବହେଳିତ। ଏହି ରାଜ ବଂଶର





ଦାୟାଦ ମାନେ ସୂରଙ୍ଗୀ ତ୍ୟାଗ କରିସାରିଲେଣି। ନିବର୍ତ୍ତମାନ ସୂରଙ୍ଗୀ ରାଜଗଡ ସ୍ଥାନରେ ଏବେ ନିର୍ମିତ ହୋଇଛି, ନବୋଦୟ ବିଦ୍ୟାଳୟ। ଯା'ହେଉ ଆମ ବିଖ୍ୟାତ ଅତୀତର ଏହି ଚିହ୍ନ ଆଜି ଭବିଷ୍ୟ ଗଡିବାର ମନ୍ଦିରରେ ପରିଣତ ହୋଇଛି। ସୂରଙ୍ଗୀ ରାଜବଂଶର ବର୍ତ୍ତମାନର ସଦସ୍ୟ ମାନେ ସୂଦୁର ଭୁବନେଶ୍ୱରରେ ଅବସ୍ଥାପିତ। ଏକଦା ଓଡିଶାର ସବୁଠାରୁ ଅଧିକ ଉଚ୍ଚତାଥିବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୁର୍ତ୍ତି ପାଇଁ ପ୍ରସିଦ୍ଧ ସୂରଙ୍ଗୀ ରାଜଗଡ ସଂଲଗ୍ନ ଜଗନ୍ନାଥ ମନ୍ଦିର ବର୍ତ୍ତମାନ ସେହି ଉନ୍ନତ ଅତୀତର ନିରବ ଦ୍ରଷ୍ଟା ହୋଇ ରହିଛି। ବର୍ତ୍ତମାନ ବି ସୂରଙ୍ଗୀଗଡରେ ଜନସାଧାରଣ ରାଜ ପରିବାରକୁ ସେହି ସର୍ବୋପରି ସ୍ଥାନ ଦିଅନ୍ତି। ସେହି ଭଗ୍ନ ସ୍ତୁପର କିଛି ଚିତ୍ର ଏଠାରେ ଉପସ୍ଥାପନ କରାଯାଇଛି।





ଚିତ୍ର ଓ କାହାଣୀ: ଡ ଜ୍ୟୋତି ପ୍ରସାଦ

ତଥ୍ୟ ଓ ସହାୟତା:

ଶ୍ରୀ ସୁଦିପ୍ତ କୁମାର ପଟନାୟକ,

ପ୍ରଧାନ ଶିକ୍ଷକ,

ସୂରଙ୍ଗୀଗଡ ବିଦ୍ୟାଳୟ।



ଭାରତୀୟ ସ୍ୱାଧିନତା ସଂଗ୍ରାମରେ ବ୍ୟବହୃତ ଦୁଇଟି ତୋପର ଭଗ୍ନାବଶେଷ ଏବେ ବି ପରିତ୍ୟକ୍ତ ଅବସ୍ଥାରେ ପଡିରହିଛି ରାଜ ଗଡ ସମ୍ମୁଖରେ।













ଦିନଥିଲା ଯେତେବେଳେ ଏହି ସବୁ ସ୍ଥାନରେ ଥିଲା ଜୀବନ୍ତ ପ୍ରାଣର ଆସ୍ଥାନ, ଯେଉଁଠି ଦିବାରାତ୍ର ଲାଗି ରହୁଥିଲା ପରିଚାରିକା ଓ ଅନ୍ୟ ରାଜ କର୍ମଚାରୀଙ୍କ ଗହଳ ଚହଳ।





ଶହେରୁ ବି ଅଧିକ ବର୍ଷତଳେ ଏହି ରାଜପ୍ରାସାଦରେ ବିଳାସବ୍ୟସନର ସମସ୍ତ ଉପକରଣରେ ଭରପୂର ଥିଲା। ଉପର ଚିତ୍ରରେ ଦେଖାଯାଉଥିବା ଭଙ୍ଗା କୋଠରୀର ତଳରେ ପଡି ରହିଥିବା ଶୌଚାଳୟ ସାମଗ୍ରୀକୁ ଦେଖି ଯେ କେହି ବି ସହଜରେ ଅନୁମାନ କରିପାରିବ ଏଠାରେ ରହୁଥିବା ସୁରଙ୍ଗୀ ରାଜଗଡର ବଂଶଜ ମାନେ କେଉଁ ମାନର ଜୀବନ ଯାପନ କରୁଥିଲେ। ତଳେ ଦିଆଯାଇଛି ବର୍ତ୍ତମାନର ପ୍ରାସାଦର ଅଂଶ।



## ମାଗଣାରେ ତାରବିହୀନ ବ୍ରଡବ୍ୟାଣ୍ଡ୍ ଇଣ୍ଟର୍‌ନେଟ୍ ସେବା

ଇଣ୍ଟର୍ନେଟ୍ ଦୁନିଆକୁ ସଂକୁଚିତ କରିପକାଇଛି, ଏଥିରେ ଦୋରାୟ ନାହିଁ। ଆମେ ସମସ୍ତେ ଇଣ୍ଟର୍‌ନେଟ୍ ବ୍ୟବହାର କରୁଛୁ, ପ୍ରାୟ ପ୍ରତ୍ୟେକ ଦିନ ଆମେ କଂପ୍ୟୁଟର୍ ସାମନାରେ ବସି ଦେଶ ଦୁନିଆର ଖବର ରଖିବା ସହିତ ଆମେ ଆହୁରି ମଧ୍ୟ ଅନେକ କାର୍ଯ୍ୟ ସହଜରେ ସଂପାଦନ କରିପାରୁଛେ। ଆଜି ପର୍ଯ୍ୟନ୍ତ ଇଣ୍ଟର୍‌ନେଟ୍ ମାନେ ଆମେ ଶୁଣିଥିଲେ ଆଉ ଦେଖିଥିଲେ, ଗୋଟିଏ କିମ୍ବା ଅନେକ କଂପ୍ୟୁଟର୍ ଯାହା ଟେଲିଫୋନ୍ ମାଧ୍ୟମରେ ସଂଯୋଗ କରାଉଥିଲା ଇଣ୍ଟର୍‌ନେଟ୍ କୁ। ଅନେକ ବନ୍ଧୁ ଯେଉଁମାନେ ବିଦେଶରେ ରହୁଛନ୍ତି, ସେମାନେ ଇଣ୍ଟର୍‌ନେଟ୍‌କୁ ଉପଭୋଗ କରୁଛନ୍ତି ଉନ୍ନତ ବେଗ ଯୋଗୁଁ ଯାହାକୁ ଆମେ କହୁ ବ୍ରୋଡବ୍ୟାଣ୍ଡ ସେବା। ସଂପ୍ରତି ଭାରତରେ ଅନେକ ସଂସ୍ଥା ବ୍ରଡବ୍ୟାଣ୍ଡ୍ ସେବା ଉପଲବ୍ଧ କରାଇଲେଣି। ଏହା ଦ୍ୱାରା ଯଦ୍ୟପି ଆମେ ତୀବ୍ର ବେଗରେ ଇଣ୍ଟର୍‌ନେଟ୍‌ର ଫାଇଦା ପାଇପାରୁଛେ କିନ୍ତୁ ଏଥି ପାଇଁ ଆମକୁ ଦେବାକୁ ପଡୁଛି ଅଧିକ ଦାମ୍। ଯେଉଁମାନେ ସେମାନଙ୍କ ଦୈନନ୍ଦିନ କାର୍ଯ୍ୟ ପାଇଁ ଇଣ୍ଟର୍‌ନେଟ୍ ଉପରେ ନିର୍ଭର କରୁଛନ୍ତି ସେମାନେ ଅଧିକ ଦାମ ଦେବା ପାଇଁ କୁଣ୍ଠାବୋଧ କରନ୍ତି ନାହିଁ। କିନ୍ତୁ ଆମ ମାନଙ୍କ ପରି ଅନେକ ଉପଭୋକ୍ତା ଯେଉଁମାନେ ଇଣ୍ଟର୍‌ନେଟ୍‌କୁ ସଉକ ଭାବରେ ବ୍ୟବହାର କରୁଛନ୍ତି ସେମାନେ ଏଥିପାଇଁ ଅଧିକ ଦାମ ଦେବା ପାଇଁ ଅକ୍ଷମ।

ବ୍ୟବସାୟର ଦୃତ ଉନ୍ନତି ହେଉଥିବା ବେଳେ ବ୍ରଡବ୍ୟାଣ୍ଡ୍ ଇଣ୍ଟର୍‌ନେଟ୍‌ସେବା ନିଶ୍ଚୟ ଭାବରେ ଶସ୍ତା ହେଉଛି ସତ କିନ୍ତୁ ତଥାପି ଏହା ଅନେକଙ୍କ ପାଇଁ ବ୍ୟୟ ବହୁଳ। ଆଜି ଯେତେବେଳେ ଦୁନିଆର ଅଧିକାଂଶ ଦେଶ ୱି-ଫି ବ୍ୟବସ୍ଥା ଲାଗୁ କରାଇ ଏକ ସୀମିତ କ୍ଷେତ୍ର ମଧ୍ୟରେ ଥିବା ସମସ୍ତ କଂପ୍ୟୁଟର୍‌କୁ ଇଣ୍ଟର୍‌ନେଟ୍ ସଂଯୋଗ ଦେଇ ପାରୁଛନ୍ତି ସେତେବେଳେ ଭାରତରେ ମାତ୍ର କେତୋଟି ସ୍ଥାନରେ ଏହାର ପ୍ରଚଳନ ଦ୍ୱାରା କୌଣସି ଆଖି ଦୃଶିଆ ଅଭିବୃଦ୍ଧି ହେବାର ଲକ୍ଷ୍ୟ କରାଯାଉନାହିଁ।

ଅନେକ ସମୟରେ ଆପଣ ମାନେ ମନରେ ନିଶ୍ଚୟ ଭାବିଥିବେ, ଯେ ଯଦି କୌଣସି ସଂସ୍ଥା ଆମକୁ ମାଗଣାରେ ଇଣ୍ଟର୍‌ନେଟ୍ ଦିଅନ୍ତା ତା'ହେଲେ ଭଲ ହୁଅନ୍ତା। ଏହି ସମସ୍ତ ସମସ୍ୟାର ଅନ୍ତ ହୋଇ ଆସିଛି, ସୂଚନା ପ୍ରଯୁକ୍ତିର ନୁତନ ଜ୍ଞାନ କୌଶଳ ଯାହାକୁ କୁହାଯାଉଛି, "ୱିମାକ୍ସ୍"। ଏହି ଜ୍ଞାନକୌଶଳର ବ୍ୟବହାର ଦ୍ୱାରା ବିନା ଟେଲିଫୋନ୍ ସଂଯୋଗରେ ଆପଣ ୱାଇରଲେସ୍ (ତାର ବିହୀନ) ମାଧ୍ୟମରେ ନିଜ କଂପ୍ୟୁଟର୍‌ରେ ବ୍ରଡବ୍ୟାଣ୍ଡ୍ ସେବା ପାଇପାରିବେ। ଅନେକ ଦେଶରେ ଏହା ବର୍ତ୍ତମାନ କାର୍ଯ୍ୟକାରୀ ହେଲାଣି, ଏବଂ ଭାରତ ମଧ୍ୟ ଏଥିରୁ ଦୁରରେ ନାହିଁ। ସଂପ୍ରତି ଭାରତରେ ଅନେକ ବ୍ୟବସାୟିକ ସଂଗଠନ ଏହି ଜ୍ଞାନ କୌଶଳକୁ ଭିତ୍ତିକରି ବ୍ରଡବ୍ୟାଣ୍ଡ୍ ସେବା ଯୋଗାଇବାକୁ ଆଗେଇ ଆସିଲେଣି।

ଏପରି ଏକ ସଂସ୍ଥା ହେଉଛି ୱିମାକ୍ସ୍ ଇଣ୍ଡିଆ ପ୍ରାଇଭେଟ୍ ଲିମିଟେଡ୍, ଯାହାର ମୁଖ୍ୟ ଶ୍ରୀ ଇସ୍ଲାମ୍ ଇନାମ୍‌ଦାର୍ କହନ୍ତି ଯେ ଏହି ଜ୍ଞାନ

କୌଶଳକୁ ବ୍ୟବହାର କରି ସେ ବିଶ୍ୱରେ ପ୍ରଥମ ଥର ପାଇଁ ନିଃଶୁଳ୍କ ୱାଇରଲେସ୍ ବ୍ରଡବ୍ୟାଣ୍ଡ୍ ଇଣ୍ଟର୍‌ନେଟ୍ ସେବା ଯୋଗାଇବେ । ଏହି ପ୍ରଣାଳୀର ବ୍ୟବହାର କରି ସେ ୫୧୨ କେବିପିଏସ୍ ପର୍ଯ୍ୟନ୍ତ ବେଗଥିବା ଇଣ୍ଟର୍‌ନେଟ୍ ମାଗଣାରେ ଯୋଗାଇବେ । ସଂପ୍ରତ୍ତି ସେ ଏହି କାର୍ଯ୍ୟପାଇଁ ଆବେଦନ ଆମନ୍ତ୍ରଣ କରୁଛନ୍ତି । ଯଦି ଆପଣ ଚାହୁଁଛନ୍ତି, ତା'ଙ୍କ ଦ୍ୱାରା ସ୍ଥାପିତ ସଂସ୍ଥାରୁ ମାଗଣାରେ ବ୍ରଡବ୍ୟାଣ୍ଡ୍ ସେବା ତାହେଲେ ଆଜି ହିଁ ତା'ଙ୍କର ୱେବ୍‌ସାଇଟ୍‌କୁ ଯାଇ ପଞ୍ଜିକୃତ (ରେଜିଷ୍ଟ୍ରେସନ) କରାଇ ନିଅନ୍ତୁ । ଏଥି ନିମନ୍ତେ କୌଣସି ଶୁଳ୍କ ନିଆଯାଏ ନାହିଁ। ଏହି ସଂସ୍ଥାଦ୍ୱାରା ଓଡିଶାରେ ଆରମ୍ଭ ହେବାକୁ ଥିବା ମାଗଣା ବ୍ରଡବ୍ୟାଣ୍ଡ୍ ସେବାକୁ ସେ ଆହ୍ୱାନ ମାଧ୍ୟମରେ ସମସ୍ତ ସଦସ୍ୟଙ୍କୁ ମାଗଣାରେ ଦେବାପାଇଁ ଇଚ୍ଛୁକ ଅଛନ୍ତି । ସଂପ୍ରତ୍ତି ଏହି କାର୍ଯ୍ୟକୁ ଓଡିଶାରେ ପ୍ରସାର କରାଇବା ଦାୟୀତ୍ୱ ଆହ୍ୱାନ ନେଇଛି । ଆପଣ ମାନେ ନିମ୍ନରେ ଦିଆଯାଇଥିବା ୱେବ୍‌ସାଇଟ୍‌ରେ ଯାଇ ରେଜିଷ୍ଟ୍ରେସନ୍ କରାଇ ନିଅନ୍ତୁ । ବର୍ତ୍ତମାନ ଏହି ସଂସ୍ଥା ତରଫରୁ ବିଭିନ୍ନ ଅଞ୍ଚଳ ପାଇଁ କର୍ମକର୍ତ୍ତା ଚୟନ ପ୍ରକ୍ରିୟା ବି ଆରମ୍ଭ ହୋଇଛି, ଯଦି ଆପଣ ଚାହୁଁଛନ୍ତି ଏହି ସଂସ୍ଥାର ସଦସ୍ୟ ହେବା ସଙ୍ଗେ ସଙ୍ଗେ କୌଣସି ପଦବୀ ଗ୍ରହଣ କରିବେ ତା'ହେଲେ ଆଜି ହିଁ ସଦସ୍ୟତା ଗ୍ରହଣ କରନ୍ତୁ । ଆହ୍ୱାନ ଗ୍ରୁପରେ ସଦସ୍ୟ ହୋଇଥିବା ସମସ୍ତ ସଦସ୍ୟଙ୍କୁ ପ୍ରାଥମିକତା ଭିତ୍ତିରେ ନିଃଶୁଳ୍କ ବ୍ରଡବ୍ୟାଣ୍ଡ୍ ସେବାପାଇଁ ଅଗ୍ରାଧିକାର ଦିଆଯିବ ।



ଆହ୍ୱାନ୍

ଏକ ବିଶେଷ ସୂଚନାଃ ଆମ ୱେବସାଇଟ୍ ର ଠିକଣା ଖୁବ୍ ଶୀଘ୍ର ବଦଳିଯିବାର ସମ୍ଭାବନା ରହିଛି । ତଥାପି ପୁରୁଣା ଠିକଣାରେ ଆପଣ ଚାହିଁଲେ ଆମ ୱେବ୍‌ସାଇଟ୍‌କୁ ଯାଇ ଦେଖିପାରିବେ । ତଥାପି ଆମେ ଆପଣଙ୍କୁ ଅନୁରୋଧ କରୁଛୁ, ଆପଣ କିଛି ଦିନ ବ୍ୟବଧାନରେ ଆମ ୱେବ୍ ସାଇଟ୍ ଦେଖିନିଅନ୍ତୁ । ଏବଂ ଅନ୍ୟ ଏକ ବିଶେଷ ଅନୁରୋଧ ହେଉଛି, ଯେହେତୁ ଏକା ସାଥିରେ ହଜାର ହଜାର ଓଡିଆ ବନ୍ଧୁଙ୍କ ନିକଟକୁ ଏହି ପତ୍ରିକା ପଠାଇବା ସଂଭବ ହେଉନି, ସେଥିପାଇଁ ଆମେ ଏହା ନିମନ୍ତେ ଏକ ଗ୍ରୁପ୍ ନିର୍ମାଣ କରିଛୁ, ଯାହାର ସଦସ୍ୟ ହୋଇଗଲେ ଆପଣ ମାନେ ଯେବେ ବି କିଛି ପରିବର୍ତ୍ତନ ହେବ କିମ୍ବା ନୁଆ ସଂସ୍କରଣ ଆସିବା ତାହା ସହଜରେ ପାଇପାରିବେ । ଏହି ଗ୍ରୁପ୍‌ର ସଦସ୍ୟ ହେବା ଅତି ସହଜ । ଆପଣ ମାନେ ଆମ ୱେବ୍‌ସାଇଟ୍‌ରେ ତଳେ ଦିଆଯାଇଥିବା କ୍ଷୁଦ୍ର ବିଜ୍ଞାପନ, ଯେଉଁଥିରେ ଆହ୍ୱାନ୍ ଗୁଗୁଲ୍ ଗ୍ରୁପ୍‌ରେ ସଦସ୍ୟ ହେବାପାଇଁ ନିବେଦନ କରାଯାଇଛି, ସେହିଠାରେ ଆପଣ ନିଜ ଇ-ମେଲ୍ ଆଡ୍ରେସ୍ ଦେଇ ସଦସ୍ୟ ହୋଇପାରିବେ । ଏଥିପାଇଁ ଆପଣ ମାନଙ୍କୁ କୌଣସି ପ୍ରକାର ଦେୟ ଦେବାକୁ ହେବନାହିଁ ।

## ଆମ ଠିକଣାଃ

ଡା ଜ୍ୟୋତି ପ୍ରସାଦ ପଟନାୟକ
ଆମ୍ବପୁଆ ମେଇନ୍ ରୋଡ୍
ବ୍ରହ୍ମପୁର-୭୬୦୦୧୦, ଓଡିଶା,
ଫୋନଃ ୯୨୩୮୬୮୫୬୯୮
ଇ-ମେଲ୍ଃ dr.odia@gmail.com

## ବିଶେଷ ସୂଚନା

ଆମର ଏହି ପ୍ରୟାସକୁ ଆପଣ ମାନଙ୍କ ପାଖରେ ପହଞ୍ଚାଇବାପାଇଁ ଆମେ ଆହ୍ୱାନ କରୁଛୁ ଆପଣଙ୍କ ସହଯୋଗ । ଆମେ ନୁଆ ୱେବ୍ ସାଇଟ୍ ଖୁବ ଶୀଘ୍ର ଆଣିବୁ ସତ ହେଲେ ବର୍ତ୍ତମାନ ଆପଣ ମାନଙ୍କୁ ଅନୁରୋଧ କରୁଛି ଆପଣ ମାନେ ଆମର ନୁଆ ଗ୍ରୁପ୍‌ରେ ସାମିଲ୍ ହୁଅନ୍ତୁ । ନିଜ କଂପ୍ୟୁଟର୍‌ରେ ଇଣ୍ଟର୍‌ନେଟ୍ ସଂଯୋଗ କରିବା ପରେ ଆମ ଗ୍ରୁପ୍‌ର ୱେବ୍ ଆଡ୍ରେସ୍ ଦିଅନ୍ତୁ, ଏବଂ ଆଜି ହିଁ ଏଥିରେ ସଦସ୍ୟ ହୁଅନ୍ତୁ । ଏହାଦ୍ୱାରା ଆମେ ଜାଣି ପାରିବୁ, ଆହ୍ୱାନ କେତେଜଣଙ୍କ ପାଖରେ ପହଞ୍ଚୁଛି । ଆଉ ଆପଣ ମାନେ ମଧ୍ୟ ସମୟ ସମୟରେ ହେଉଥିବା ଘୋଷଣା ଓ ବିଜ୍ଞାପନ ସବୁ ସହଜରେ ପାଇପାରିବେ । ଏବଂ ଏହାଦ୍ୱାରା ଅଯଥା ଇ-ମେଲ୍ ସବୁ ଆପଣଙ୍କ ମେଲବକ୍ସରେ ପହଞ୍ଚିବନାହିଁ । ଏହି ଗ୍ରୁପ୍ ସଂପ୍ରତ୍ତି କେବଳ ସମସ୍ତ ସଦସ୍ୟଙ୍କୁ ବିଭିନ୍ନ ପ୍ରକାରର ବିଜ୍ଞାପନ ଯଥା ଆହ୍ୱାନର ଆଗାମୀ ସଂସ୍କରଣ ପାଇଁ ଲେଖା ଆହ୍ୱାନ କରିବା, ଏହି ଇ-ପତ୍ରିକାର ଉନ୍ନତି ପାଇଁ ଆପଣଙ୍କ ସୂଚିନ୍ତିତ ମତାମତ ନେବା ଇତ୍ୟାଦି ପାଇଁ ବ୍ୟବହାର କରାଯିବ । ଏଥିରେ କେହି ସଦସ୍ୟ କୋଣସି ପ୍ରକାରର ଅଯଥା ସମ୍ବାଦ କିମ୍ବା ବିଜ୍ଞାପନ ଦେଇପାରିବେ ନାହିଁ । ସେଇଥିପାଇଁ ଆପଣ ନିର୍ଭୟରେ ନିଜ ନିଜ ଇ-ମେଲ ଆଇ ଡି ଦେଇ ସଦସ୍ୟ ହୋଇପାରନ୍ତି । ଯଦି ଭବିଷ୍ୟତରେ ସମ୍ଭବ ହୁଏ ତେବେ ପ୍ରତ୍ୟେକ ସଦସ୍ୟଙ୍କୁ ଗୁଗ୍‌ଲ୍ ମେଲ୍‌ର ଇ-ମେଲ୍ ସଦସ୍ୟତା ମାଗଣାରେ ଉପହାର ସ୍ୱରୂପ ଦିଆଯାଇପାରେ ।

## ବିଶେଷ ସୂଚନା

ଆମ ଏହି ପତ୍ରିକାରେ ପ୍ରକାଶ ପାଉଥିବା ଅନେକ ଗଳ୍ପ ଓ କାହାଣୀ ଆପଣମାନଙ୍କୁ ନିଶ୍ଚୟ ଭାବରେ ଭଲ ଲାଗିଥିବ । ଯଦି ଆପଣଙ୍କୁ କୋଣସି କୃତି ଭଲ ଲାଗେ ତା'ହେଲେ ସଂପୃକ୍ତ କୃତିର କର୍ତାଙ୍କୁ ନିଜ ତରଫରୁ ଧନ୍ୟବାଦ ବାର୍ତ୍ତା ଏବଂ ଅଭିନନ୍ଦନ ପଠାନ୍ତୁ । ଯଦି ଆପଣ ଚାହୁଁଛନ୍ତି, ତେବେ ଆମେ ଆପଣଙ୍କ ପତ୍ର ସେହି ଲେଖକ କିମ୍ବା ଲେଖିକାଙ୍କ ପାଖକୁ ପଠାଇଦେବୁ । ଆପଣ ନିଜର ସୁଚିନ୍ତିତ ମତାମତ ଆମକୁ ଇ-ମେଲ ମାଧ୍ୟମରେ କିମ୍ବା ପତ୍ରଦ୍ୱାରା ପ୍ରେରଣ କରିପାରିବେ ।

Our Group Address:
http://groups.google.com/group/aahwaan
Our Website:
http://www.freewebs.com/aahwaan
Earn while you learn:
http://www.freewebs.com/ebizel
Free computer education:
http://www.freewebs.com/bamcom